ଗୁରୁକୁଳ

# ବର୍ଣ୍ଣ ପରିଚୟ






## ଗୁରୁକୁଳ ଶିକ୍ଷାନିକେତନ





# ମୁଖବନ୍ଧ

ଭଗବାନଙ୍କ ପବିତ୍ର ଉପବନରେ ପିଲାମାନେ ଟିକିଟିକି ସୁକୋମଳ ପୁଷ୍ପ ସଦୃଶ । ସେମାନଙ୍କର ହୃଦୟ ଅତ୍ୟନ୍ତ ନିର୍ମଳ, ପବିତ୍ର ଏବଂ ତ୍ରୁଟିଶୂନ୍ୟ ଅଟେ । ସେମାନେ ମୋ ପ୍ରଭୂଙ୍କର ଚଳନ୍ତି ବିଗ୍ରହ ଅଟନ୍ତି ।

ମୁଁ ଅତ୍ୟନ୍ତ ଖୁସି ଯେ ସେମାନଙ୍କ ଆନନ୍ଦାର୍ଥେ ଏ ପୁସ୍ତକଟି ଅର୍ପଣ କରୁଛି ।

-ସ୍ୱାମୀ ସ୍ୱରୂପାନନ୍ଦ ସରସ୍ୱତୀ-

PUBLISHER :-VEDIC SIKSHYA PRASAR SAMITI,ODISHA
Website :- www.vspsodisha.blogspot.com
EMAIL ID :-secretaryvsps.odissa@gmail.com



WRITER: - Mr.Sadananda Guru
B.A.
At:Badagorada, Nayagarh, Mob:9237037716

***PRINTED AT*** :- **Jagannath Printing Press, Sarankul**

***PRINTING HELP : - Rs. 65.00***

# 'ଅ' ବନା ଅକ୍ଷର



| | | |
|---|---|---|
| ଚକ | ଅମଳ | ଅସଫଳ |
| ଅଖ | କଳସ | ବରଗଛ |
| ନଖ | ଶପଥ | ନଟବର |
| ନଳ | କଠଉ | ଚଟକଳ |
| ଫଳ | ଚରଣ | ସମତଳ |
| ଘର | ଭରତ | ଦରଶନ |
| ଜଳ | ଅଧର | କସରତ |



ସଡକ କଡ଼ର ଗଛ । ଅଳପ ଅଧର ହସ ।
ପଣସ ଫଳର ରସ । ଚଷ ନକର ଅଳସ ।
ଜନମ ମରଣ ସତ । ପଠନ କଷଣ ସତ ।
ଶରତ କଲମ ଧର । ପଢ଼ ଅଳସ ନ କର ।

**କଥା:**

ଭରତ ମଠ ନକର । ସଁଅଳ ସଅଳ ଚଳ । ସତ କହ । ଶପଥ କର । ତପନ କମଳ ରଖ । ନଖ ନ ରଖ । ଅଝଟ ନ କର । ତମ ଛପର ଘର । ସରଗ ଜଳ । ଅଠର ଖଚର । ଧରମ କର । ଗଛ ନ ଚଢ଼ । ବଣର ଝର । ଠକଠକ ନ କର । କନକ କଳସ ଗଢ଼ । ନ ଧର ଅନଳ ରଡ଼ । ସମର କର । ଭୟ ନ କର । ମରଣ ଡ଼ର । ନ କର ନର । ସତ କହ ଧନ । କର ବଡ଼ ମନ । ଲକ୍ଷ୍ୟ ରଖ ହର ଚରଣ ତଳ ।

# 'ଆ' କାର



| | | |
|---|---|---|
| କାଉ | ଆକାଶ | ଦରବାର |
| ରାଧା | ବତାସ | ନାରାୟଣ |
| ଖାଲ | ଫରଚା | ପାରାବାର |
| ରାଜା | ସକାଳ | ଅବଦାନ |

| | | |
|---|---|---|
| ଗରା | ତରକା | ସାବଧାନ |
| ପାରା | କାରଣ | ଜାଗରଣ |
| ଭାଷା | ଶାସନ | ଭାଗବତ |



ବାଳକ ଗଣ ବାଳକ ଗଣ । ଗଜାନନ ପଦ କର ଭଜନ ।
ସଦା ରଖି ମନ ଚରଣ ତଳ। ଲୟ ହବ ତମ , ପାକଲା ଫଳ ।
ଭଜ ଗଜାନନ ତାତ ଓ ମାତା । ସରବଦା ତମ ଅଭୟଦାତା ।
ସକାଳ ସମୟ ଖରା । କଳା ଆକାଶର ତାରା ।
ଝରଣାର ଜଳ ଭରା । କହ ଭଲ କଥା ପରା ।
ଧର ରାମପଦ ରସ । ପାପମାନ କର ନାଶ ।
ନ ଯା'ଅ ଖଳର ପାଶ । ଜାଡ ବଡ ମାଘମାସ ।

**କଥା :**

ଭାରତ ଆମର ମାଆ । ତା'ର ନାମ ରଖ । ସାହସ ଧର । ସଫା ଜଳ ପାନ କର । ରସାଳ ଫଳ ଖାଅ । ଆତ ପଣସ ଗଛ ଲଗାଅ । ଖରା ସମୟ । କଳା ଚଷମା, ଧଳା ଜାମା, ଛତା ଦରକାର କର ।

# "ଇ' କାର



| | | |
|---|---|---|
| ଜମି | ମିଳନ ଗିରିରାଜ | |
| ଚିଠି | ବଗିଚା | ହିମାଳୟ |
| ପିଠି | ପିପିଲି | ଥିରିଥିରି |
| ରାତି | ଭିତିରି | ଦୟାନିଧି |
| | ଲିପି | ମିହିର ଉମାପତି |
| | ବିରି | ଗହିର ଆଦିକବି |
| | ଜିଆ | ବାଳିକା ଅଭିଳାଷ |



ମାଛିବସା ଚିଜ ନଆଣକିଣି । ମଶା ତଡିଦିଅ ମଶାରି ଟାଣି ।
ଅଦିନ ବରଷା ଖରାପ ଭାରି । ଦରମିଶା ହସ ଗରଳପରି ।
ହିତକଥା ଭାଷ ଜିଣିବ ମହି । ଶଠ ମିତ ପରା ଅନଳ ଅହି ।
ହିସାବ ରଖିବ ନଥିବ ଭୟ । ମଣିଷ ଜନମ ବିଷାଦମୟ ।

**କଥା :**

ପରିବାର ଗଢ଼ ସାନ, ବଢ଼ିବ ସନମାନ । ଘିଅ ମିଶା ଭାତ ଅଟଇ ଭଲ । ଗରିବ ମିଣିଷ ଝାଟି ମାଟିର ଘର କରି ରହିଅଛି । ଆଜି ରବିବାର, ଅତିଥି ମିଳନର ଦିନ । ବାଳିକାଟି ଇତିହାସ ବହି କିଣିବ । ବାଇଗଣ ପରିବା ଭଲ ପଥି । ଗିରିଜା ଜଗତର ମାଆ ।

# 'ଈ'କାର



| | | |
|---|---|---|
| ଦୀନ | ସମୀର | ମହାନଦୀ |
| ସାଥୀ | ତରଣୀ | ଲୀଳାବତୀ |
| ତୀର | ଧରଣୀ | ଶଚୀନାଥ |
| ବୀଣା | ଅସୀମ | ରାଜଧାନୀ |

| | | |
|---|---|---|
| ଗୀତ | ଅବନୀ | ବିପରୀତ |
| ଧୀର | କିରୀଟୀ | ନିପୀଡନ |
| କୀରା | କାହାଣୀ | ଭାରତୀୟ |



ହାତୀ ପିଉଅଛି ଶୀତଳ ନୀର । ବୀର ବସିଅଛି ତା'ର ଉପର । ସୀତା, ମୀତା, ଗୀତା, ଆମ ଭଉଣୀ । ଧାନ ମାପ କର ଧରି ଗଉଣୀ । ନିତି ନୀତିମାଳା କର ଭଜନ । ସରିଯାଉ ଆମ ଦୀନ ଜୀବନ । ଘରଣୀ ରାଣୀର ସରଳ ବାଣୀ । ମନ କିଣି ନିଏ ତାର କାହାଣୀ । ସରସୀର ନୀର,ନୀଳ ନୀରଜ । ନୀହାର ପଡିଛି ନୀରସ ଆଜ ।




**କଥା :**

ଦୀପାବଳୀ ଦିନ ,ଦୀପାଳୀ ଜାଳ । ଲବଣୀ ଅତୀବ ନରମ । ପର ପୀଡନ କାରୀ ପାପୀ ଅଟଇ । ଭୀମ ଅତିଶୟ ବୀର । ଭୀଷଣ ଶୀତ ପଡିଲାଣି । ସୀତା ସତୀ ନାରୀ । ମହାନଦୀର ଗଭୀର ଜଳ ରାଶି । ମୀନ ମଗର , ଜୀବ ତା'ର ନିବାସୀ ।

# 'ଉ'କାର



| | | |
|---|---|---|
| ମହୁ | ତରୁଣ | ତରୁରାଜ |
| ଖୁଦ | କୁକୁର | ସୁକୁମାର |
| ଲୁହ | ଅରୁଣ | ଭାନୁମତୀ |
| ଶାଶୁ | କୁହୁକ | ଗୁଜୁରାଟି |
| ଝୁଣା | ଝୁଲଣ | ତରଭୁଜ |
| ସୁଖ | ପୁରୁଷ | ଅନୁରାଗ |
| ବୁକୁ | ହୁଗୁଳା | ରଘୁନାଥ |



ସୁଧାସମ ସୁବାସିତ ସୁଷମାର ଝର
କୁଳୁକୁଳୁ ନାଦ କରି ବହୁଅଛି ତଳ
ଆହା, ଫୁଟିଛି କୁସୁମ ।
ତରୁଲତା ପୁରିଅଛି ଶିରୀ ଅନୁପମ ।୧।
ସୁଲୁସୁଲୁ ବାଆ ବହି ଆସୁଅଛି ଭାସି
ପଶୁପକ୍ଷୀ କୁଳ, ସବୁ ଜୀବଭାରି ଖୁସି
ଏତ ମଳୟ ମରୁତ ।
ଯାନୀଯାତ ଫୁଲ ଫଳ ଜଗତ ପୁରିତ ।୨।



**କଥା :**

ମଧୁର ବଚନ ଶୁଣିବାକୁ ସବୁମାନ ଇଚ୍ଛୁକ । ବୁଢ଼ୀ ଅସୁରୁଣୀ ମାୟାକରି, ଲୁଚିଗଲା । ସୁନା ହାରର ଦର ବହୁତ ଅଧିକ । ପର ଉପକାରୀ ସାଧୁ ଅଟଇ । ଶିଶୁ ମନ ମୁନି ଋଷି ସମାନ । ଭୀରୁ ଯୁବକ ପଶୁ ଭଳି ।

# 'ଊ' କାର



ଭୂମି ନୂତନ ଅନୁକୂଳ
ଦୂର କୂଜନ ଚୂଡାମଣି
ଧୂଳି ଜୀମୂତ ନିରୂପଣ



ଭୂଜ ତୂଣୀର ଭୂତନାଥ
ଯୂଇ ଧୂସର ଯୂଥପତି
ସୂଚୀ ପୂଜାରୀ ସୂତାହାଟ
କୂଳ ବିଭୂତି ଅନସୂୟା

ଚୂତ ଫଳ ଭାରି ରସାଳ ,
ଘରକୁ ଝୁଣାଧୂପ ।
ପାଦକୁ ରୂପା ନୂପୁର ଭଲ .
ଅଗଣା ମଝି କୂପ ।
ସୁର, ଶୂଳପାଣି , ପୂଜନୀୟ ,
ନିତି ପୂଜନ କର ।
କୂଟ କପଟ ଦୂରକୁ ଛାଡ ,
ନଥିବ ଯମ ଡ଼ର ।



**କଥା :**

ଖରା ଦିନକୁ ସୂତା ଲୁଗା ଭଲ । କୂଅ ମୂଳ ସଫାରଖ । ପୂଜାଥାଳୀ ଆଣ । ମୂଷା ମୂଳା ଖାଏ । ରାମର ଭାଇ ସୂତାକାର । ହରିର ଦୁହିତା ଅନୂଢା ଅଛି । ଦୂତ ଖବର ଆଣି ଅଛି ।

# 'ଋ' କାର



| | | |
|---|---|---|
| ଧୃତି | ପୃଥକ | ମୃଣାଳିନୀ |
| ବୃକ୍ଷ | ପୃଥୁଳ | ମୃଦୁଭାଷୀ |
| ମୃତ | ବିବୃତ୍ତି | ସରୀସୃପ |



| | | |
|---|---|---|
| ତୃଣ | ବୃହତୀ | ଅଧିକୃତ |
| ତୃଷା | ମୃଦୁଳ | ଉପକୃତ |
| ହୃଦ | ବୃଷଭ | ଜତୁଗୃହ |
| ଘୃତ | ଆଦୃତ | କୃପାଭିକ୍ଷା |

ଘୃତ ପାନ କର କଟିବ ବିଷ ।
ଗୃହ କାମ ସାରି ନୂଆ ଗୃହିଣୀ ।
କୃଷି ଓ କୃଷକ ପରିପୂରକ ।
କୃପଣତା ଭାଇ ଖରାପ ଗୁଣ ।
ପିତା ଓ ହଳଦୀ କୃମି ନାଶକ ।

ବୃଥା କଥା ଖଳଜନ ସଦୃଶ ।
ଚଉରା ଲିପଇ ମୃତ୍ତିକା ଆଣି ।
ପିତୃମାତୃ ଋଣ ସୁଝ ବାଳକ ।
ନୃପତି ଲଢଇ ଧରି କୃପାଣ ।
ପୃଥିବୀର ବଳ ଦୃଢ ନାୟକ ।



**କଥା :**

ଆମାଜନ ପୃଥିବୀର ବୃହତ୍ତମ ନଦୀ । ମୃଗରାଜ ହାତୀର ପରମ ବଇରୀ । ତାହା ଏକ ହୃଦୟ ବିଦାରକ କାହାଣୀ । ମନକୁ ସଦା ଦୃଢୀଭୂତ କର । ସୃଜନଶୀଳତା ଏକ ଭଲ ଗୁଣ । କବିତାଟି ଆବୃତ୍ତି କର ।

# 'ଏ' କାର



| | | |
|---|---|---|
| କେତୁ | ଚେତନା | ଦେବରାଜ |
| ଖେତ | ଠେକୁଆ | ସେନାପତି |
| ଛେନା | ଦେଉଳ | ଦେବାଳୟ |
| ଜେମା | ନେଉଳ | ଫେରିବାଲା |
| ଡେଣା | ପେଚକ | ମେଘନାଦ |
| ଢେଉ | ଫେଡାଣ | ଲେଉଟିଆ |
| ତେଜ | ବେତାର | ସେବାୟତ |



ଆଷାଢ ମାସରେ ବରଷେ ମେଘ ।
ଚଷା ପୁଅ ଚଷେ ଗାଇଣ ଢଗ ।
ବଡ ଦେଉଳର ନେତକୁ ଦେଖ ।
ଦେଶ ବିଦେଶର ଖବର ରଖ ।
ଜଳେ ରହି ଉଛେ ଡାକଇ ଭେକ ।
କେକା ନାଚ କରେ କେକୀର ପାଖ ।
ଶରତ ମାସରେ ଫୁଟେ ଶେଫାଳୀ ।
ନୀଳ ଘନେ ମାରେ ଲୁଚି ବିଜୁଳୀ ।



**କଥା :**

ହେଳା କଲେ ଭେଳା ବୁଡେ । ଦେଶ ସେବା ମହତ ସେବା । ବେଲ ଖରାଦିନେ ପାଚେ । ଚେର ମାଟିକୁ ଜାବୁଡି ଧରେ । ସବୁ ଗେରୁଆ ବସନଧାରୀକୁ , ସାଧୁ ଭାବିବା ଭୁଲ । ବେଣୁଧର ସାଥୀ ମେଳରେ ଧେନୁପଲ ଧରି ପାହାଡକୁ ଗଲେ ।

# 'ଐ' କାର

| | | |
|---|---|---|
| ଚୈତ | ଖୈତାନ | ସୈନିକ |
| ଜୈବ | ନୈତିକ | ଚୈତା |
| ଜୈନ | ନୈଷଧ | ଜୈବି |
| ତୈଳ | ପୈଶାଚ | ବୈକା |
| ଦୈନ | ବୈଠକ | ବୈଦି |
| ନୈଶ | ବୈଭବ | ଭୈର |
| ବୈଠା | ରୈଖିକ | ସୈକ |



କୈଳାସ ଚଢିଛି ଶୈଳ ଚୂଳକୁ । ଦୈବାତ ଭେଟିଲା ଜଣେ ସାଧୁକୁ ।
ଗୈରିକ ବସନ ସହିତ ମୁନି । ଜୈମିନୀ ପୁରାଣ ସାଥିରେ ଘେନି ।
ଦୈବୀ କୃପାବଳେ ଲଭି ବୈଭବ । ଆଶିଷ ବିତରେ ପୈତୃକ ଲାଭ ।
ଯୁବ ଯୁବା ବୁଢ଼ା ଶିଶୁ ବାଳକ । ଉଭା ଆସି ସାଧୁପାଶେ ଦୈନିକ ।



କଥା :

ସୈନିକ ବୀର ପୁରୁଷ । ହିମଗିରି କୈଳାସରୁ ଭଗବାନ ଶିବ ହୈମବତୀ ସହ ପୃଥିବୀକୁ ଆସିଲେ । ଐଶାନ ଦିଗରେ ତୈଳ କୂପ ଅଛି । ବୈଶାଖ ମାସରେ ନଦୀ ନାଳ ଶୁଖିଯାଏ । ଶୈଶବ କାଳ ପାଠ ପଢ଼ିବାର ପ୍ରକୃତ ସମୟ ।



# 'ଓ' କାର



| | | |
|---|---|---|
| କୋଳି | କୋଇଲି | କେ |
| ଖୋଷା | ଗୋଚର | ଘୋଳଦହି |
| ଝୋଟି | ଗୋଧୂଳି | ତିଳୋତ୍ତମା |
| ଟୋପି | ଘୋଟକ | ବଣଭୋଜି |
| ତୋଫା | ଦୋରସା | ଭୋଳାନାଥ |
| ଥୋଡ | ପୋଖରୀ | ଯୋଗମାୟା |
| ଭୋଗ | ବୋତଲ | ରୋହିମାଛ |




ଦୋଷକ୍ଷମା କରେ ମହତ ଲୋକ ।
ଲୋଭ ଛାଡି ଖାଅ, ଲାଗିଲେ ଭୋକ ।
ମଣିଷର ବୈରୀ ରୋଗ ବୈରାଗ ।
ଗୋରସ ପିଇଲେ ହେବ ନୀରୋଗ ।
କୋପୀକୁ, ନ କୁହ, ଗୋପନ କଥା ।
ରୋଦନ କରିବ ସଦା ଜାଣିଥା ।



କୋଡ ପୋଛା ପୁଅ ଗୋଲ ବସର ।
ବୋଉ ଥୋଇଦେଲେ ପୋଥି ପତର ।

**କଥା :**

ଗୋକୁଳବାସୀ ଗୋମାତା ସେବା କରୁଥିଲେ । ଅସୁର ଘୋର ନାଦ କରି ଭୂମିରେ ଲୋଟି ପଡିଲା । ଲବ କୁଶ ସହୋଦର ଭାଇ । ବୃକ୍ଷରୋପଣ ମହତ କାମ । ଛୋଟ କଥାକୁ ମୋଟ କରିବା ଅନୁଚିତ ।

# 'ଔ' କାର



| | | |
|---|---|---|
| ତୌଲ | ଢୌକନ | ଫୌଜ |
| ଯୌଥ | ନୌକର | ସୌଦା |
| ଶୌଚ | ଯୌଗିକ | ଭୌମରାଜ |
| ଗୌର | ମୌଳିକ | ଭୌଗୋଳିକ |
| ଗୌଣୀ | ରୌରବ | ଔଷଧୀୟ |
| ଧୌତ | ସୌଖୀନ | ଚୌକିଦାର |



ସୌଦାଗର ସୁତ ସୌଧ ଉପରେ ।
ମୌନୀ ଭାବୁଅଛି ମୌନାବତୀରେ ।
ଯୌତୁକ ଆଣିବ କୌତୁକ ହୋଇ ।
ପୌଷ ଗଲେ ଭୋଜି ପୌରକୁ ଦେଇ ।
ପୌରୁଷର ଗୁଣ ଉଠିବ ଫୁଟି ।
ଭୌତିକ ଜୀବନେ ଗୌଣକୁ କାଟି ।
ଆଷାଢ ମାସରେ ଫେରିବ ନୌକା ।
ଧନ ଦୌଲତକୁ ଥୋଇବେ ଏକା ।



**କଥା :**

କୌଶଳ କରି କୌରବ ମାନେ ଭୀମକୁ ବିଷ ଲଡୁ ଖୁଆଇଲେ । ତୌଲରେ ଠକିବା ମହାପାପ । ଲୌହ ଅତିଶୟ ଟାଣ । ମୌସୁମୀ ବାୟୁ ବହୁଅଛି । ଶିକ୍ଷିତା ନାରୀ ଦେଶର ଗୌରବ ।

# 'ଂ' ଅନୁସ୍ୱାର



| | | |
|---|---|---|
| କଂସ | ଶଂସିତ | ସଂକଳନ |
| ସଂଘ | ସଂକଟ | ସଂଗଦୋଷ |
| ଅଂଶ | ଶଂକୁନ | ସଂଶୋଧନ |
| ଅଂଶୀ | ସଂକୋଚ | ସଂଯମତା |
| ସଂଗ | ସଂକ୍ଷେପ | ସଂବରଣ |

ହିଂସା କର ନାହିଁ କାରେ, ବଂଶ ହେବ ନାଶ ।
ସିଂହର ଆହାର ମାଂସ, ବିସ ଖାଏ ହଂସ ।
ବଂଶୀଧର ବଂଶୀଧରି ଅଂଶୁପା କୂଳରେ
କଂସର ଚିଟାଉ ଗାଏ ସଂଶୟ ମନରେ
ନାଗ ସାପ ଦଂଶନରେ ହଂସା ଉଡିଯିବ
ସଂଯମ କର ମନକୁ ସଂସାରୁ ତରିବ ।





# 'ଃ' ବିସର୍ଗ



| | | |
|---|---|---|
| ଦୁଃଖ | ନିଃଶେଷ | ଦୁଃସାହସ |
| ଦୁଃଖୀ | ନିଃସହାୟ | ଦୁଃସମୟ |
| ଅଂହଃ | ଛିଃ ଛିଃ | ଅହଃରହ |
| ଭୂବଃ | ଦୁଃସହ | ପୌନଃପୌନିକ |

ଦୁଃଖ ସମୟରେ ନହୁଅ କାତର । ଚାଲିଯିବ ଦୁଃସମୟ ।
ସୁଖ ଦୁଃଖ ପରା ଦଇବ ଭିଆଣ । ଅଟେ ଏହା ନିଃସଂଶୟ ।
ଛିଃ ଛିଃ ଛିଃ ମିଛ କହିବିନି ମିଛପରା ମହାପାପ ।
ନିଃସହାୟକୁ ରେ ସହାୟ ହୋଇବି ସାହା ହେବେ ଦୟାମୟ ॥







# ' ଁ ' ଚନ୍ଦ୍ରବିନ୍ଦୁ

କଇଁ ଉଆଁସ ଜାହାଁପନା
ଛୁଆଁ କଇଁଛ ଟୁଆଁଟୁଇଁ
ନିଆଁ ଡାଆଁସ ଦୁହିଁବା
ମୁଁ ଯାଆଁଳା ଭଅଁର
ମୁହଁ ପାଉଁଜି ଭଉଁରୀ



ଭଇଁଚ କରିଛି ବାଉଁଶ ଦୋଳି ।
ଥଇଁଠା ନାଚିଲା ପାଉଁଶ ବୋଳି ।
ପାଉଁଜି ବାଜୁଛି ରୁଣଝୁଣ ।
ଥିଁଳା କୋଳିଟି ଭାରି ଗୁଣ ।
କଅଁଳା ପିଲାଟି କୁଆଁ କୁଆଁ ।
ଆଖି ମଳି ହୁଏ , ହେଲେ ଧୁଆଁ ।
ନିଆଁ ସାଥେ କେବେ ଖେଳ ନାହିଁ ।
ଆମ ମାଆ ପରା ଏହି ଭୂଇଁ ।



**କଥା:**

କାଇଁଚ ମାଇଁ ପାଖରେ ବସିଲା , ମାଇଁ ତାକୁ ସାଉଁଳି ଦେଲେ । କହିଲେ – ତୋ ମୁହଁ କାହିଁକି ଝାଉଁଳି ପଡିଛି ? କାଇଁଚ କହିଲା, ଟାଇଁ ଟାଇଁ ଖରାରେ ପରା ଧାଇଁ ଧାଇଁ ଆସୁଛି ।

# ' ' ହଳନ୍ତ

| | | |
|---|---|---|
| ଚୁପ୍ | ସଠିକ୍ | ଟପ |
| ସତ୍ | ଇଷତ୍ | ଟିପ |
| ଚିତ୍ | ହଠାତ୍ | ଜକ୍ |
| ଦାମ୍ | ଖତମ୍ | ଖାନ |
| ଖୋଦ୍ | ଜାମିନ୍ | ଧୂଳି |
| ଗୁମ୍ | ଜୁଲମ୍ | ଦିଗ୍‌ବଳୟ |
| ହୋସ୍ | ହୁକୁମ୍ | ଫୁସ୍ ଫୁସ୍ |





ଭୟ ବେଳେ ଛାତି ଧକ୍ ଧକ୍ ।
ଭେକ ଡିଏଁ ଖାଲି ଫକ୍‌ଫକ୍ ।
ସୁନା କରୁଅଛି ଚକ୍‌ଚକ୍ ।
ମେଜ କରନାହିଁ ଠକ୍‌ଠକ୍ ।



ଖିରାଦିନେ ଝାଳ ଗମ୍‌ଗମ୍ ।
ବାଳିକା ନାଚୁଛି ଛମ୍‌ଛମ୍ ।
କଳ କରୁଅଛି ଘର୍‌ଘର୍ ।
କ୍ଷୀର ଦୁହୁଁଅଛି ଚର୍‌ଚର୍ ।



ସାପ ଚାଲିଗଲା ସର୍‌ସର୍ ।
ଝରଣା ବହୁଛି ଝର୍‌ଝର୍ ।
ଶୁଖିଲା କାଠଟି ମଟ୍‌ମାଟ୍ ।
ଖଟ ହେଉଅଛି କଟ୍‌କଟ୍ ।



ଚାଲିଦେଖି ତାର ଦମ୍ ଦମ୍ ।
କଥା କହୁଅଛି ଥମ୍‌ଥମ୍ ।
ଅଯଥା ନ ହୁଅ ବକ୍‌ବକ୍ ।
କୁକୁଡା ରାବଇ କକ୍ କକ୍ ।

# " ।" ୟ ଫଳା



| | | |
|---|---|---|
| ବାଚ୍ୟ | ସୂରମ୍ୟ | ଅମାବାସ୍ୟା |
| ଖ୍ୟାତି | ଆଦିତ୍ୟ | ଉପପାଦ୍ୟ |
| ଗଦ୍ୟ | ସଭ୍ୟତା | ବ୍ୟବସାୟୀ |
| ସୈନ୍ୟ | ଉଦ୍ୟମ | ବ୍ୟୋମକେଶ |
| ଭାଗ୍ୟ | ଉଦ୍ୟାନ | ରାଜକନ୍ୟା |
| ବନ୍ୟ | ଅବଶ୍ୟ | ରସକୁଲ୍ୟା |
| କାବ୍ୟ | ହିରଣ୍ୟ | ସତ୍ୟଯୁଗ |

ସତ୍ୟପଥେ ନିତ୍ୟ ଯାଅ , ଦୃଢ କରି ମନ ।
କୁହନା ଅନ୍ୟକୁ ମିଥ୍ୟା , ଅସହ୍ୟ ବଚନ ।
ଚୈତନ୍ୟ ଉଦିତ ହେବ , ସୌଭାଗ୍ୟ ବଢିବ ।
ନ୍ୟାୟପଥ ମୂଲ୍ୟବାନ , ମୃତ୍ୟୁଭୟ ଯିବ ।

**ସାହିତ୍ୟର ମୁଖ୍ୟ ବ୍ୟାକରଣ ,**
**ବ୍ୟାୟାମ କରହେ ଶିଷ୍ୟଗଣ ।**
**ତ୍ୟାଗ କର ବାବୁ ଆଳସ୍ୟ ଗୁଣ ,**
**ପୂଣ୍ୟ କାମ ପରା ଅଟେ ମହାନ ।**
**ବୈଦ୍ୟ କଥା ମାନି କରନ୍ତୁ ପଥ୍ୟ**
**ଆରୋଗ୍ୟ ହୋଇବୁ ଅଟଇ ସତ୍ୟ**
**ଭୃତ୍ୟ ନୁହଁଇ କେବେ ଘୃଣ୍ୟ ।**
**ଭକତି କର ମାନ୍ୟ ଗଣ୍ୟ ।**



**କଥା:** ବିଦ୍ୟା ବଳରେ ମନୁଷ୍ୟ ଖ୍ୟାତି ଲାଭ କରେ । ଆବଶ୍ୟକ ହେଲେ ଅନ୍ୟକୁ ସାହାଯ୍ୟ ମାଗ । ଉଦ୍ୟୋଗୀ ପାଖକୁ ସୌଭାଗ୍ୟ ଆପେ ଆପେ ଆସେ । ଆଦ୍ୟ ଆଷାଢରେ ଧରଣୀ ଶ୍ୟାମଳ ଦେଖାଯାଏ ।

# " ୍ର " ର ଫ



ଦ୍ରୋଣ ନମ୍ରତା　　ପ୍ରାକୃତିକ
କ୍ରୟ　ଅଙ୍କୁର　　ଶ୍ରବଣକୁମାର
ଗ୍ରହ　ହିମାଦ୍ରି　　କ୍ରୀତଦାସ
ଗ୍ରାମ　ତ୍ରିଫଳା　　ମହାପ୍ରଭୁ



ଧ୍ରୁବ　　ରୁଦ୍ରାଣୀ　　ଗ୍ରହବିପ୍ର
ଚକ୍ରୀ　　ଦ୍ରୌପଦୀ　　ଶ୍ରେଣୀଗୃହ
ଛତ୍ର　　ପ୍ରଣବସୂତ୍ରଧର



ପ୍ରାତଃ କାଳେ ନିଦ୍ରା ଯିବା, ଆଳସ୍ୟର ଲକ୍ଷଣ ।
କ୍ରୀଡା ପରିଶ୍ରମେ ଦେହ, ବଜ୍ରସମ ଟାଆଣ ।
ପ୍ରଜାପତି ଚିତ୍ର ଦେଖି ଛାତ୍ରମନ ନାଚଇ ।
ନଦୀସ୍ରୋତ କ୍ଷିପ୍ର ବେଗେ ସମୁଦ୍ରରେ ମିଶଇ ।
ଚକ୍ରପେଶି ଚକ୍ରଧର ନକ୍ର ଗ୍ରୀବା ଛେଦିଲେ ।
ଆରତେ ଡାକିଲା ଗଜ, ପ୍ରାଣ ତାର ରଖିଲେ ।
ଭ୍ରାତା ମାନେ ତାମ୍ର ପାତ୍ରେ ଘୃତ କେବେ ନରଖ ।
ଗୋରସ ଆମିଷ ଦ୍ରବ୍ୟ ଏକତ୍ର ହିଁ ଅଭକ୍ଷ ।

**କଥା:** ପ୍ରଶଂସା କରିବା ଗୋଟିଏ ଭଲ ଗୁଣ । ପରିଶ୍ରମ ପରେ ବିଶ୍ରାମ କରିବା ଉଚିତ୍ । ନିଦ୍ରିତ ଲୋକକୁ ଜାଗ୍ରତ କରାଅ ନାହିଁ । ଭଲ କାମ କଲେ ଗ୍ରାମେ ଗ୍ରାମେ ସୁନାମ ପ୍ରଚାରିତ ହୋଇଥାଏ ।

# "ଲ" ଲ ଫଳା



ମ୍ଲେଚ୍ଛ ବିପ୍ଳବ କଲ୍ଲୋଳିନୀ
ଗ୍ଲୋବ ହିଲ୍ଲୋଳ ପଲ୍ଲବିତ
ପଲ୍ଲୀ କଲ୍ଲୋଳ ଉଲ୍ଲସିତ



ମଲ୍ଲୀ ଆହ୍ଲାଦ ଗେହ୍ଲାପୁଅ
କ୍ଲୀବ ଅଶ୍ଳେଷା ଆହ୍ଲାଦିତ
ଗେହ୍ଲା ଭଲ୍ଲୁକ ପଲ୍ଲୀଗୀତ

ପଢ ନିତି ଗୀତା ଶ୍ଳୋକ, କ୍ଲେଶ ହେବ ଦୂର।
ଅଶ୍ଳୀଳ ବଚନ ଗ୍ଲାନି ମୁଖରେ ନଧର।
ଶୁକ୍ଳପକ୍ଷ ରାତ୍ରି କରେ , ମନ ପ୍ରଫୁଲ୍ଲିତ।
ଜଳରେ ପ୍ଲାବିତ ଜମି କୃଷକ ଆପ୍ଲୁତ।
ଶ୍ଳାଘ୍ୟ କାମ କଲେ ନାମ ରହିବ ଅମ୍ଳାନ।
ଅମ୍ଳଜାନ ଯୋଗୁଁ ପ୍ରାଣୀ ରଖଇ ଜୀବନ।



**କଥା :**

ମଳୟ ପବନରେ ବୃକ୍ଷ ପଲ୍ଲବିତ ହୁଏ। ମନ ଉଲ୍ଲସିତ ଥିଲେ , କାମ କରିବାକୁ ଆଗ୍ରହ ଆସେ।

# "ୱ" ବ ଫଳା



| | | |
|---|---|---|
| ଦ୍ୱିପ | ଦ୍ୱାରକା | ସ୍ୱାଗତିକା |
| ଦ୍ୱିଜ | ଆହ୍ୱାନ | ସରସ୍ୱତୀ |
| ଶ୍ୱେତ | ବିଦ୍ୱାନ | ତପସ୍ୱିନୀ |
| ସ୍ୱାତୀ | ଶ୍ୱାପଦ | ସ୍ୱେଚ୍ଛାସେବୀ |
| ନିଃସ୍ୱ | ଯଶସ୍ୱୀ | ମହେଶ୍ୱର |
| ଜ୍ୱର | ଶ୍ୱଶୁର | ଅବିଶ୍ୱାସ |
| ଜ୍ୱାଳା | ଈଶ୍ୱର | ସ୍ୱାଧୀନତା |



ପକ୍ୱଫଳ ଅତି ସ୍ୱାଦ ଅମୃତ ସମାନ
ବିଶ୍ୱବିଧାତା ରଖିଛି କରିଣ ଯତନ ।
ବିଦ୍ୱାନ ବିଦ୍ୟାବଳରେ ଏ ପୃଥ୍ୱୀ ଜିଣଇ
ନିଶ୍ୱାସ ପ୍ରଶ୍ୱାସ ବାୟୁ ଶୋଧନ କରଇ ।
ଉଷାକାଳେ ତପସ୍ୱୀ ଯେ ବେଦଧ୍ୱନିକରି
ଗିରି ଗହ୍ୱର ଝଂକୃତ ସତ୍ୱ ପ୍ରେମବାଣୀ ।
ଶୀଳ ସ୍ୱଭାବ ଯାହାରେ ଜିହ୍ୱାକୁ ଆୟତ
ଦେଖିବନି ତବ ଦ୍ୱାରେ ଯମର ରାଜତ୍ୱ ।

**କଥା:**

ପାହାଡ଼ ମଧ୍ୟରେ ପ୍ରତିଧ୍ୱନି ଶୁଣାଯାଏ । ସତୀନାରୀ ର ସ୍ୱାମୀ ପରମ ଦେବତା । ଜ୍ୱରରେ ପିଲାଟି ଥରୁଛି । ମୃତ ଲୋକ ଶ୍ୱାସ ପ୍ରଶ୍ୱାସ କରିପାରେ ନାହିଁ ।

# ‘ନ’ ଫଳା



ସ୍ନାୟୁ ପଦ୍ମିନୀ ସନ୍ନିପାତ
ବାସ୍ନା ଅଭିନ୍ନ ତନ୍ନ ତନ୍ନ
ଚିହ୍ନ ପନ୍ନଗ ଛନ୍ନଛନ୍ନ
ଜହ୍ନା ଅନ୍ନଦା ଜଗନ୍ନାଥ

ପହ୍ନା ଉନ୍ନୀତ ସନ୍ନିଧାନ
ଅଗ୍ନି ଏକାନ୍ନ ଅବସନ୍ନ
ପ୍ରଶ୍ନ ପଳାନ୍ନ ଜହ୍ନରାତି



ପ୍ରସନ୍ନ ଚିତ୍ତେ ଅନ୍ନ ଖାଅ । ଭଗ୍ନ ଶରୀର ଯତ୍ନ ନିଅ ।
ବିଦ୍ୟା ସମାନ ରତ୍ନ ନାହିଁ । ପୂଜ ବିଘ୍ନେଶ ମଗ୍ନହୋଇ ।
ମାତାକୋଳରେ ଶିଶୁ ଜହ୍ନ । ଦେଖଇ ହୋଇଣ ଉଛନ୍ନ ।
ସ୍ନାନକରିବ ସ୍ନିଗ୍ଧଜଳେ । ସ୍ନେହ କରିବ କୌତୁହଳେ ।
ଉଷାକାଳର ସ୍ୱପ୍ନସତ । ଭଜରେ ମନ ଜଗନ୍ନାଥ ।



**କଥା:**

ପୃଥିବୀର ଆହ୍ନିକ ଗତି ଯୋଗୁଁ ଦିନରାତି ହୁଏ । ମଧ୍ୟାହ୍ନ କାଳର କିରଣ ବହ୍ନିଭଳି ପ୍ରଜ୍ୱଳିତ । ଜଳର ନିମ୍ନଗତି ଗୁଣ ଯୋଗୁଁ ତଳକୁ ବହୁଅଛି ।

# 'ମ' ଫଳା



| | | |
|---|---|---|
| ଲକ୍ଷ୍ମୀ | ରୁକ୍ମିଣୀ | ସ୍ମରଣୀୟ |
| ଶ୍ମଶ୍ରୁ | ଲକ୍ଷ୍ମଣ | ଭସ୍ମାସୁର |
| ଗୁଳ୍ମ | ଉନ୍ମାଦ | ଶୁଭସ୍ମୀତା |
| ଆତ୍ମା(ମ୍ା) | ମୃଣ୍ମୟ | ହିରଣ୍ମୟ |

ବାଲ୍ମୀକି ଜପିଲେ ଶ୍ରୀରାମ ପଦ ।
ଭୀଷ୍ମ କରିଥିଲେ ବଜ୍ରଶପଥ ।
ଉଷ୍ମ ଜଳପାନ ଦେହକୁ ହିତ ।
କଲ୍ମଷ ରହିଲେ ଯିବ ମହତ ।
ଭସ୍ମ ବୋଳି ହେଲେ ଶ୍ମଶାନବାସୀ ।
ସଦା ଯୋଗାସନ ସେ ବ୍ରହ୍ମବାଦୀ ।
ଦରିଦ୍ର ବ୍ରାହ୍ମଣ ହୋଇ ରାବଣ ।
ଛଦ୍ମ ବେଶେ ସୀତା କଲା ହରଣ ।
ଗ୍ରୀଷ୍ମ କାଳେ ରବି ରଶ୍ମି ପ୍ରଖର ।
ସରୋବରେ ପଦ୍ମ କି ମନୋହର ।



**କଥା:**

ଝିଅଟିର ନାମ ସ୍ମୃତିରେଖା । କାଲି ତାର ଜନ୍ମଦିନ । ସେ ତାର ସାଥୀ ତନ୍ମୟୀ କୁ ଅକସ୍ମାତ ଭେଟିଲା । ପଦ୍ମାବତୀ ସହ ଆସିବାକୁ ତାକୁ ଅନୁରୋଧ କଲା ।

# ରେଫ( ର୍ )



| | | |
|---|---|---|
| ମର୍ତ୍ତ୍ୟ | ନର୍ମଦା | ବର୍ତ୍ତମାନ |
| ପାର୍ଥ | କର୍ଷଣ | ସମର୍ପଣ |
| ପୂର୍ବ | ଦର୍ପଣ | ଧନୁର୍ବିଦ୍ୟା |
| ଦୁର୍ଗା | ଦର୍ଦ୍ଦୁର | ନିର୍ବାସନ |
| ସୂର୍ଯ୍ୟ | ନିର୍ଜଳ | ପରାମର୍ଶ |
| ଅର୍ଘ୍ୟ | ଶର୍କରା | ବିଶ୍ୱକର୍ମା |
| ଈର୍ଷା | ସୁଧର୍ମା | ସମଦର୍ଶୀ |

ସୁକର୍ମ କର ସଦା , ହର୍ଷ ଚିତ୍ତରେ ।
ତର୍କ ନକର କେବେ ବୃଥା କଥାରେ ।
କାଳ ଗର୍ଭରେ ବର୍ଷ ଦିନ ଲିଭିବ ।
କର୍କଶ ବାଣୀ ମର୍ମେ , ମର୍ମେ ଘାରିବ ।



ଗର୍ବ କରିଲେ ଦିନେ ହୋଇବ ଖର୍ବ ।
କର୍ମ କୁଡ଼ିଆ ହେଲେ ସର୍ବସ୍ୱ ଯିବ ।
କୁକର୍ମ ପରାଭାଇ ନର୍କକୁ ପଥ ।
ଧର୍ମ ଅର୍ଜନ ସିନା ସ୍ୱର୍ଗକୁ ଅର୍ଥ ।
ଘର୍ଘର ନାଦ କରି ପର୍ବତ ଶୀର୍ଷେ ।
ନିର୍ଝର ବହିଆସେ ବର୍ଷଣ ଶେଷେ ।

**କଥା :** ଦୁର୍ନାମ ମୃତ ସମାନ । ଦୁର୍ବଳ ଲୋକ କର୍ମ କରିବାକୁ ଅସମର୍ଥ । କର୍ପୁରର ବାସ୍ନାରେ ଘର ସୁବାସିତ । ନୀଳ ନଦୀ ପୃଥିବୀର ଦୀର୍ଘତମ ନଦୀ । ନିର୍ଜନ ବନରେ ରାଜା ଏକାକୀ ବୁଲୁଥିଲେ । ଆଶ୍ୱିନ ମାସରେ ଦୁର୍ଗା ପୂଜା ହୁଏ ।

# ଯୁକ୍ତାକ୍ଷର



## ଙ+କ=ଙ୍କ

ଅଙ୍କାବଙ୍କା ପଥ ଦେଇ ବହିଯାଏ ନଈ
ଏକମନେ ରଙ୍କନିଧି ଅଙ୍କ କଷୁ ଥାଇ ॥
ପଲଙ୍କେ ବସିଛି ମାଙ୍କଡ ଭାଇ ।
ଡଙ୍କ ଖାଉଅଛି ଝଙ୍କାରି ହୋଇ ।
ଭଲଝିର ଦିଏ ସଙ୍କର ଗାଈ
ଟଙ୍କ ତୋରାଣୀକୁ ମନ ଖୋଜଇ ।



## ଙ+ଖ=ଙ୍ଖ

ଶଙ୍ଖାରୀ ବୁଢ଼ାଧରି ଶଙ୍ଖା ।
ଶଙ୍ଖ କ୍ଷେତ୍ରରେ ବିକେ ଏକା ।
ଯାହାର ମନ ଶୃଙ୍ଖଳିତ । ସେ ସିନା ମନୁଷ୍ୟେ ବିଦିତ ।



## ଙ+ଗ=ଙ୍ଗ

ଗୌରାଙ୍ଗ ମହାପ୍ରଭୁ ମୃଦଙ୍ଗ ତାଳେ
ନାମ ସଙ୍ଗୀତ ଗାଇ ସଙ୍ଗୀଙ୍କ ମେଳେ ।
ବଙ୍ଗରୁ କଳିଙ୍ଗକୁ ଆସି ବହନ ।
ନାମେ ଶୃଙ୍ଗାର କରି ଶ୍ରୀ ଅଙ୍ଗେ ଲୀନ ।

## ଙ+ଘ=ଙ୍ଘ

ସଂସାର ସାଗର ଲଙ୍ଘିବା ପାଇଁ ।
ଧର୍ମ ସଂଘପରା ନଉକା ଭାଇ ।

# ଯୁକ୍ତାକ୍ଷର (କ୍ରମଶଃ)



## ଞ+ଚ=ଞ୍ଚ

କାଞ୍ଚନ ଚଞ୍ଚଳ ଚଞ୍ଚଳ ଗଲା , ପଞ୍ଚାୟତକୁ
ପାଞ୍ଚିଲା ଅଞ୍ଚଳ ଭରିବ ମାଗି , ସରପଞ୍ଚଙ୍କୁ ।

## ଞ+ଛ=ଞ୍ଛ

ପିଲାଦିନୁ ବହୁଲାଞ୍ଛନା ସହି ଧ୍ରୁବ କୁମର
ମନୋବାଞ୍ଛା ତାର ପୂରଣ କଲେ ଦୟା ସାଗର ।

## ଞ+ଜ=ଞ୍ଜ

ସଞ୍ଜବତୀ ଜାଳେ ଅଞ୍ଜନ ନାଇ ନୂଆଘରଣୀ
ଖଞ୍ଜାଗାଉଅଛି ସଙ୍ଗୀତ, ଭାବେ ଧରି ଖଞ୍ଜଣୀ ।

## ଞ+ଝ=ଞ୍ଝ



ପଞ୍ଝାଏ ସିଂହ ଆସିଲେ ଧାଇଁ ।
ହାତୀ ମାରିଲେ ପଞ୍ଝା ପକାଇ ।

## ଣ+ଟ=ଣ୍ଟ

ଭାଲୁକଲା ଆଣ୍ଟେ କଣ୍ଟିଆ ଭୋଜି । ବାଣ୍ଟିବାକୁ ନାହିଁ ନିଅଣ୍ଟ ଆଜି ।
କଣ୍ଟା ନାହିଁ ବଗ ଥୁଣ୍ଟା ଡାଳରେ । ଅଣ୍ଟ ଶୁଖାଇଣ ବସିଛି ଧିରେ ।



# ଯୁକ୍ତାକ୍ଷର(କ୍ରମଶଃ)



(ଣ୍ଠ)

ବ୍ୟାୟାମ କରିଲେ ଯିବ ଆଣ୍ଠୁଗଣ୍ଠି ବାତ
ଦାନ ଧର୍ମ କରିବାକୁ ନହୁଅ କୁଣ୍ଠିତ
ଶୁଣ୍ଠି ପିପ୍ପଳୀ ଅଟଇ ଔଷଧରେ ଗଣା ।
ଗୁଣ୍ଠୁଣୀ ହାତୀ ଚାଲଇ ଢଳିଢଳି ସିନା ।

(ଣ୍ଡ)

ଗେଣ୍ଡୁ ଫୁଲ ମାଳ ପଠାଇଥିଲେ ଗୁଣ୍ଡିଚା ରାଣୀ ।
ଗଣ୍ଡୂଷରେ ପଣ୍ଡା ନୈବେଦ୍ୟ କଲେ ମଉଡମଣି ।
ଗଣ୍ଡେ ମଣ୍ଡା ଖାଇ କୃଷକ
ଭାଇ ଭିଡୁଛି ଡେଣ୍ଡା ।
ମୁଣ୍ଡ ଝାଳ ତୁଣ୍ଡେ ମାରିଣ
ଧାନ ଫଳାଏ କେଣ୍ଡା ।



ଅଣ୍ଡା ଖାଇ ଭେଣ୍ଡା ଭାରି ସବଳ , ହାତରେ ଖଣ୍ଡା ।
ଶତ୍ରୁ ସୈନ୍ୟମାରି ବୀର ଦର୍ପରେ ପୋତିବ ଝଣ୍ଡା ।

ଣ୍ଢ=ଣ+ଢ

ହାତୀ ଆସିଲା ମାଡି ଶୁଣ୍ଢ ହଲାଇ
ମେଣ୍ଢା ପଲ ରଡି ଛାଡି ଗଲେ ପଳାଇ ।
କୁଣ୍ଢ ମୋଟ ବୃକ୍ଷତଳେ ଶୋଇଛି ଷଣ୍ଢ ।
ପିଣ୍ଢାରେ ବସି ଦେଖିବା କଣ୍ଢେଇ ନାଚ ।



# ଯୁକ୍ତାକ୍ଷର (କ୍ରମଶ



## ନ୍ତ=ନ+ତ

ହେନ୍ତାଳ ବନର ଭୂଇଁ ଅତ୍ୟନ୍ତ ସନ୍ତ ସନ୍ତିଆ ।
ଦନ୍ତା ହାତୀ ପରେ ମାହୁନ୍ତ ଦେଖ ହୋଇଛି ଠିଆ ।
ପାହାନ୍ତାରୁ ଉଠି ମହନ୍ତ, ଗନ୍ତାଘରେ ପଶିଲେ ।
ସୁମନ୍ତ ଅନନ୍ତ ଡାକିଣ ଧନ ସୁମାର କଲେ ।
ହଳଦୀ ବସନ୍ତ ଚିନ୍ତିତ ଭାରି ସନ୍ତାନ ଆଶା ।
ଥର ଥର କରି ମାଙ୍କଡ ବୁଢା , ଭାଙ୍ଗୁଛି ବସା ।
ତନ୍ତୁ କିଣି ତନ୍ତି ତନ୍ତରେ ବୁଣେ ଜାମା ପତର
ପ୍ରାନ୍ତେ ପ୍ରାନ୍ତେ ଚିତ୍ର ବିଚିତ୍ର ଦେଖ କି ମନୋହର ।



## ନ୍ଥ=ନ+ଥ

ଦଧି ମନ୍ଥନ କଲେ ବାହାରେ ଘୃତ ।
ସନ୍ଥ ମନ୍ଥନ କଲେ ଜ୍ଞାନ ଅମୃତ ।
ଗେଣ୍ଡା କଚ୍ଛପ ଗତି ଅତି ମନ୍ଥର ।
ମନ୍ଥରା ଯୋଗୁଁ ବନେ ଶ୍ରୀରଘୁବୀର ।

## ନ୍ଦ=ନ+ଦ



ନନ୍ଦ ଭୁବନେ ବିଜେ ବାଳ ମୁକୁନ୍ଦ ।
ଗୋବିନ୍ଦ ଆନନ୍ଦରେ ଧରିଣ ଛନ୍ଦ ।
ଗୋରୁ ମନ୍ଦିରେ ପ୍ରଭୁ ସେ ଆଦିକନ୍ଦ ।
କି ସୁନ୍ଦର ଠାକୁରେ ସତେକି ଚାନ୍ଦ ।
ଶିଖୀ ଚନ୍ଦ୍ରିକା ନାଇ ଚନ୍ଦନ ଶିର ।
ସତେକି ମିତଣୀ ଲୋ ଜାଣେ ହୃନ୍ଦର ।
ମକରନ୍ଦ ପାନକି ତାଙ୍କ ଦର୍ଶନ ।
ଦୋଳ ଗୋବିନ୍ଦ ଆମ ନନ୍ଦନନ୍ଦନ ।

# ଯୁକ୍ତାକ୍ଷର(କ୍ରମଶଃ)

## ନ୍ଧ=ନ+ଧ



ବିଭୁପ୍ରେମ ବନ୍ଧନରେ ବାନ୍ଧିହୁଅ ବନ୍ଧୁ
ଅନ୍ଧାର ଦୂର କରିବେ ସେ କରୁଣା ସିନ୍ଧୁ
ସନ୍ଧ୍ୟା ଆସିବା ପୂର୍ବରୁ
ସମର୍ପି ପୂଜ ସୁଗନ୍ଧ ଚନ୍ଦନ ଅଗୁରୁ ।
ଅନ୍ଧମୁନି ତୀର୍ଥ କଲେ , ଶ୍ରବଣ କାନ୍ଧରେ
ଦଶରଥ ପ୍ରାଣ ନେଲେ , ନାରାଚ ମୁନରେ
ଏକି ହେଲା ସତେ କିସ
ଶାପ୍ୟ ହେଲା ଆଶୀର୍ବାଦ, ଗଲା ବନ୍ଧ୍ୟା ଦୋଷ ॥



## ମ୍ପ=ମ+ପ



ଜଟାୟୁ ହୃଦକମ୍ପନ,ଲଙ୍କେଶ ଦେଖି
ନୃଶଂସ ରାବଣ ନେଲା , ସୀତାଙ୍କୁ ଝାମ୍ପି
ପିମ୍ପୁଡି ଭଳି ଲଙ୍କାରେ , ପଶି ବାନର
ଛାରଖାର କଲେ ସର୍ବ ସମ୍ପଦ ତାର
ରାମବାଣ ତମ୍ପସାପ, ବିଷ ସଦୃଶ
ଜ୍ୱାଳାରେ କମ୍ପିଲା ତାର , ନାଶିଲା ବଂଶ
ହନୁବୋଲେ ବିଭୀଷଣ , ସମ୍ପର୍କ ରଖି
ଫେରିଲେ ଜାନକୀ ଧରି , ସମ୍ପତ୍ତି ଲେଖି ।

## ମ୍ଫ=ମ+ଫ

ବାମ୍ଫୀ ଜଳ , ବାମ୍ଫ ଆକାରେ , ବାୟୁ ମଣ୍ଡଳେ ମିଶେ ।
ଲମ୍ଫ ଦେଇ , ସିଂହ ଗୁମ୍ଫାରୁ , ବନ୍ୟ ଜନ୍ତୁଙ୍କୁ ନାଶେ ।
ଡେମ୍ଫେ ଡେମ୍ଫେ, ସାରା ବଗିଚା, କେତେ ରଙ୍ଗୀନ ଫୁଲ
ଖୋଜୁଛନ୍ତି , ମାଆ ଡାମ୍ଫଣ, ଗୁନ୍ଥିବା ପାଇଁ ମାଳ ।

# ଯୁକ୍ତାକ୍ଷର(କ୍ରମଶଃ)

## ମ୍ବ=ମ+ବ



ବୃଷଭେ ଅମ୍ବିକା, ଡମ୍ବରୁଧର
ସୁନୀଳ ଅମ୍ବରେ, ହେଲେ ବାହାର ।
ସମ୍ବାଦ ଜାଣିବା, ପାଇଁ ଧରାର
କମ୍ବୁ କଟକରେ, ହେଲେ ହାଜର ।
ତୁମ୍ବାଧାରୀ ଏକ, ଦେହେ କମ୍ବଳ
ବିମ୍ବାଧର ନାମ, ନାହିଁ ସମ୍ବଳ ।
ଦୁଃଖେ ପୁଚ୍ଛାକଲେ, ହେରମ୍ବ ମାତା
ଚୁମ୍ବକେ ତ୍ର୍ୟମ୍ବକ, କହିଲେ କଥା ।
ମଣିଷର ଥାଏ, ତା ପ୍ରତିବିମ୍ବ ।
ଆ'ର ଭାଗ୍ୟ ସଦୃଶ କଣା ତୁମ୍ବ

## ମ୍ଭ = ମ+ଭ



ସୁଧର୍ମା ସଭାରେ , ସ୍ୱୟମ୍ଭୁ କଲେ , ରମ୍ଭା ହରଣ
ପରିତ୍ରାଣ ନାହିଁ , ମନ୍ମଥ ବାଣୁ , ହେଲା ପ୍ରମାଣ ।
ମୈନାକେ ଭବାନୀ , ବଧିଲେ ବୀର , ଶୁମ୍ଭ ନିଶୁମ୍ଭ
ହତ ଚକିତ ଯେ ମହିଷା ତାର , ଭାଙ୍ଗିଲା ଦମ୍ଭ ।
ମାତାଙ୍କ ଆଦେଶେ , ବିଘ୍ନେଶ ଜଗିଛନ୍ତି ଦୁଆର ।
ବିଶ୍ୱମ୍ଭରା ଧରି , ଉଠିଲା ଶମ୍ଭୁ , ହେଲେ ଗମ୍ଭୀର ।
ପୋଷିବା ପାଇଁକି , କୁମ୍ଭାର ପେଟଗଢଇ କୁମ୍ଭ ।
କୁମ୍ଭାଟୁଆ ରାବ , ପୂର୍ବରୁ କରେ , କାର୍ଯ୍ୟ ଆରମ୍ଭ ।

# ସଂଯୁକ୍ତ ଯୁକ୍ତାକ୍ଷର



କ+କ =କ୍କ
ଧିକ୍କାର ବଚନ ମାତା ସହି ନ ପାରିଲେ ।
ଟକ୍କର ଦେଇଣ ସିନ୍ଧୁତୀରେ ପକ୍କା କଲେ ।

କ+ତ =କ୍ତ
ଯୁକ୍ତିକରି ପ୍ରଭୁ ସଂଗେ କରନାହିଁ ଚୁକ୍ତି
ଭକ୍ତି କରି ମୁକ୍ତ କଣ୍ଠେ ଗାଅ ହେବ ମୁକ୍ତି ।



କ୍ଷ = କ+ଷ
କ୍ଷୁଦ୍ର ପକ୍ଷ ମେଲି, ମକ୍ଷିକା ,
ବସି ଫୁଲ ଉପରେ
ଆହରଣ କରେ ଅମୃତ ,
ଦେଖି ଏକ ଲକ୍ଷ୍ୟରେ ।



କ୍ସ =କ+ସ
ଅମିନ ଆସିଲେ , ବକ୍ସର ଚଢି
ଜମି ମାପକଲେ ନକ୍ସାକୁ କାଢି ।

ଗ୍ଦ = ଗ+ଦ
ବାଗ୍ଦେବୀ ଯାହାକୁ ସହାୟ । ଜ୍ଞାନ ତାହୃଦରୁ ଉଦୟ
ଜଗ୍ଦୀଶ କରତୁ ଭଜନ । ନଥିବ ଯମର କଷଣ ।

# ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)



ଗ + ଧ=ଗ୍ଧ

ଦଗ୍ଧିଭୂତ କଥା ଅନ୍ତର ପୋଡ଼େ
ମୁଗ୍ଧକଥାମାନ, ଏମନ ଲୋଡ଼େ ।

ଚ+ଚ=ଚ୍ଚ

ସଚ୍ଚରିତ୍ର ମନ ସଦା ଉଚ୍ଚାଟନ
ସଚ୍ଚିନ୍ତା କରଇ ମୁଖେ ଉଚ୍ଚାରଣ ।



ଚ+ଛ =ଚ୍ଛ

ତୁଚ୍ଛ କଥା ପୁଚ୍ଛାଇଲେ, ହୋଇଯିବ ମୂର୍ଚ୍ଛା
ଶୀଖି ପୁଚ୍ଛ ନାଇ କାହ୍ନୁ , ଧରିଛନ୍ତି ବର୍ଚ୍ଛା ।

ଚ+ଞ =ଚ୍ ଞ

ବାଳକେ ମୋର ବୋଲକର ।
ଯାଚ୍ଞାଅ ସମର୍ପି ଈଶ୍ୱର ।

ଜ+ଜ = ଜ୍ଜ



ଉଜ୍ଜୟିନୀ ରାଜ ସଭାରେ, ଥିଲେ ନଅ ପଣ୍ଡିତ
ଉଜ୍ଜଳ କରିଲେ, ସଜ୍ଜନେ ରାଜା ବିକ୍ରମାଦିତ୍ୟ ।

ଜ+ଝ=ଜ୍ଝ

କୁଜ୍ଝଟିକା ମାଡିଆସିଲେ , ପରା ନଦିଶେ ବାଟ ।
ନାନାବାଯ୍ଯା ଗୀତ ଶୁଣାଏ , ମାଆ ହେଲେ ଅଝଟ ।

## ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)

ଜ+ଞ =ଜ୍ଞ

ନାଁ ବାଳକତ ଅଜ୍ଞାନ, ନାହିଁ ତାଙ୍କର ପ୍ରଜ୍ଞା
ପ୍ରତିକଥା କରି ଅବଜ୍ଞା , ସଦା ଖୋଜନ୍ତି ସଂଜ୍ଞା ।



ଟ+ଟ =ଟ୍ଟ

ବୀର ବସିଅଛି ଅଟ୍ଟାଳିକାରେ
ଥଟ୍ଟା କରୁଅଛି ଅଟ୍ଟହାସ୍ୟରେ ।



ଡ+ଗ=ଡ୍ଗ, ଡ+ଡ=ଡ୍ଡ , ଣ+ଣ =ଣ୍ଣ

ଉଡ୍ଡୀନ ପତାକା , ଧରି ଖଡ୍ଗଧାରୀ
ବିଷଣ୍ଣ ବଦନେ , ଯାଉଅଛି ଫେରି ।
ଖଡ୍ଗୀ ନେଲା ଆଜ ବଜର ଶପଥ
ଅକ୍ଷୁଣ୍ଣ ରଖିବ ମାତୃଭୂମି ଯଶ ।

ତ+କ=ତ୍କ

ତତ୍କାଳେ ଶୁଣିଣ ସର୍ପ ଫୁତ୍କାର
ଉତ୍କଣ୍ଠାରେ ଶିଶୁ କଲା ଚିତ୍କାର ।
ଅତିଥି ସତ୍କାର, ଉତ୍କଳ ନୀତି ।
ଉତ୍କଟ ଦାରିଦ୍ର୍ୟ , ଉତ୍କୋଚ ଅତି ।



ତ+ତ=ତ୍ତ

ଛିଣ୍ଡା କୁର୍ତ୍ତା ପିନ୍ଧିଅଛି , ନରୋତ୍ତମ
ଦୁଃଖି ହେଲେ ମଧ୍ୟ, ସ୍ୱଭାବ ଉତ୍ତମ ।

# ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)

ତ+ଥ = ତ୍ଥ

ଉତ୍ଥାନ ଓଁଡିନ ଲାଗିଛି ସଂସାରେ
ଉତ୍ଥାପନ୍ନ ଭର ନାହିଁ ଏ ମନରେ ।



ତ+ପ = ତ୍ପ

ଉତ୍ପୀଡନ ରାଜା , ଭାରି ଉତ୍ପାତ
ଉତ୍ପାଟନ କଲେ , ଶ୍ରୀ ଜଗନ୍ନାଥ ।

ତ+ସ =ତ୍ସ

କୁତ୍ସା କଥା ପରା କୁତ୍ସିତ , କର ନାହିଁ ଭର୍ତ୍ସନା
ଦୀନ ସେବା ପାଇଁ ଉତ୍ସର୍ଗ , କରେ ଉତ୍ସାଦୀ ସିନା ।

ଦ+ଗ=ଦ୍ଗ

ମାୟା କରି ଦୈତ୍ୟ , ମୁଦ୍‌ଗର ପେଶିଣ
ପ୍ରଚଣ୍ଡ କିରଣ , କଲା ଉଦ୍‌ଗୀରଣ ।

ଦ+ଘ-ଦ୍ଘ   ଦ+ଦ=ଦ୍ଦ

ରାଜ୍ୟପାଳ କଲେ , ବନ୍ଧ ଉଦ୍ଘାଟନ
ଉଦ୍ଦେଶ୍ୟ ତାଙ୍କର , ଭୂ-ଜଳ ସେଚନ ।



ଦ+ଧ= ଦ୍ଧ

ଶୁଦ୍ଧ ପୂତ ହୋଇ ଉଦ୍ଧବ , ବୁଦ୍ଧି କରି ପ୍ରଖର ।
ଗୋବିନ୍ଦଙ୍କ ପାଶେ ଶରଣ , ପଶି ହେଲେ ଉଦ୍ଧାର ।

# ସଂଯୁକ୍ତ ଯୁକ୍ତାକ୍ଷର (କ୍ରମଶଃ)

**ଦ+ବ = ଦ୍ବ**

ବୁଦ୍‌ବୁଦ୍ ପରା ଏ ଜୀବନ, ଏତେ ଉଦ୍‌ବିଗ୍ନ କାହିଁ
ମାଟିର ଜୀବନ ମାଟିରେ, ଦିନେ ଯିବ ମିଳାଇ ।



**ଦ+ଭ = ଦ୍ଭ**

ଯାହାର ଚରିତ୍ର ସଦ୍ଭାବ
ତାହାର ଅଦ୍ଭୁତ ଉଦ୍ଭବ ।

**ଦ+ଯ = ଦ୍ୟ**

କା ପୁରୁଷ ନ କରଇ ଉଦ୍‌ଯୋଗ
ତଦ୍ୟନିତ ଦୁଃଖ , କରଇ ଭୋଗ ।

**ପ+ତ = ପ୍ତ**

ଗୁପ୍ତ ପଥ ଦେଇ ରପ୍ତାନୀ , ହେଲା ସପ୍ତାହ ବାର ।
ଆରକ୍ଷୀ ବାହିନୀ ସାହାଯ୍ୟେ , ଧରିଲେ ଗୁପ୍ତଚର ।

**ପ+ପ = ପ୍ପ**

ସଂକ୍ଷିପ୍ତ ଟିପ୍‌ପଣୀ, ପଢିଣ, ଗୁରୁ ଖପ୍ପାହୋଇଲେ
ତ୍ରିକଟୁ କିଭଳି ହୋଇବ, ପିପ୍‌ପଳୀ ଛାଡିଦେଲେ ।

**ପ+ସ = ପ୍ସ**

ସ୍ୱର୍ଗର ଅପ୍‌ସରା ଉର୍ବଶୀ , ଈପ୍‌ସା କଲା ପାର୍ଥଙ୍କୁ
ପାର୍ଥ କିନ୍ତୁ ମାଆ ଡାକିଲେ , କଥାକାଳ କାଳକୁ ।

# ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)



ବ+ଜ = ବ୍ଜ

ଗନ୍ଧ ଓ ଚନ୍ଦନ ଧରିଣ , କୁବ୍‌ଜା କି ଆନନ୍ଦିତ ।
ଅବ୍‌ଜ ପାଖୁଡାରେ ଘେନିଣ, ଲେପ ଦେବ ଗୋବିନ୍ଦ ।

ବ+ଦ= ବ୍ଦ

ଶବ୍ଦ ବ୍ରହ୍ମଂ ଅଟେ ଓଁ କାର , ଦେଖ ଶୁଭୁଛି ନାଦ
ଷଡ ଚକ୍ର ଶାଧିପାରିଲେ , ତାର ପାଇବୁ ଭେଦ ।



ବ+ଧ = ବ୍ଧ

କ୍ଷୀରାବ୍ଧିତନୟା କମଳା, କୋପେ ହୋଇଲେ କ୍ଷୁବ୍ଧ
ଦୁଇ ଭାଇ ଜଗା ବଳିଆ, ଦୁଃଖ ଦୁର୍ଦ୍ଦଶା ଲବ୍ଧ ।

ଳ+କ = ଲ୍କ

ଉଲ୍କାପାତ ହେବ ଆକାଶୁଁ , ଘଟିବ ଅଘଟଣ ।
ପାପୀକୁଳ ପ୍ରଭୁ ନାଶିବେ , କଲ୍କୀ ବେଶ ଧରିଣ ।

ଲ+ଗ = ଲ୍ଗ



ଫାଲ୍‌ଗୁନେ ଦୋଳ ଉତ୍ସବେ, ଶ୍ରୀ ରାଧାଗୋବିନ୍ଦ
ଗାଣ୍ଡିବ ଧରି ଫାଲ୍‌ଗୁନି, କଲେ ଗଣ୍ଡା ବଧ ।

ଳ+ପ = ଲ୍ପ

କାଳ୍ପନିକ କଥା ଶୁଣିଣ , ନହୁଅ ଭୟଭୀତ ।
ଅଳ୍ପ ଅଳ୍ପ କରି କରସାଧନା , ଥିବ କଳ୍ପ ପର୍ଯ୍ୟନ୍ତ ।

ଳ+ଫ = ଲ୍ଫ     ଲ୍+ଫ = ଲ୍ଫ  ଳ+ଭ = ଲ୍ଭ

ଉଲ୍ଫା ମାନେ ଭାରି ନୃଶଂସ , କଲେ ନରସଂହାର
ନିରୀହ ଜନଙ୍କୁ ପ୍ରଗଲ୍‌ଭେ କଲେ ଗୁଳ୍ପ ପାହାର ।

ଶ+ଚ = ଶ୍ଚ     ଶ+ଛ = ଶ୍ଛ

ନିଶ୍ଚୟ କରିବ ପୁତ୍ର , ଶତ୍ରୁ ଶିରଶ୍ଛେଦ
ଆଶ୍ଚର୍ଯ୍ୟ ହୋଇଣ ସର୍ବେ, ହୋଇଲେ ନିଶ୍ଚିନ୍ତ ।

## ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)



ଷ+ଟ=ଷ୍ଟ,

ଷ + କ= ଷ୍କ,     ଷ + ଠ= ଷ୍ଠ

ପରିଷ୍କୃତ ନାରୀ , ଘରକୁ ଶୀରି ।
ଦୁଷ୍କର୍ମ ଅଟଇ , ନରକ ପୁରୀ ।
ଶିଷ୍ଟାଚାର ଶିଖ , ଦୁଷ୍ଟାମୀ ଛାଡି
ଇଷ୍ଟଦେବ ଚିନ୍ତ , ଚରଣେ ପଡି ।
ନିର୍ଭୟ ଦାନ , ମଧ୍ୟେ ଶ୍ରେଷ୍ଠ । ନିଷ୍ଠୁର ଆଚରଣ କଷ୍ଟ ।
ସମୃଦ୍ଧି ଜନ୍ମଇ ନିଷ୍ଠାରୁ । ବନ୍ଧୁ ଚିହ୍ନିବ ଓଷ୍ଠଧାରୁଁ ।

ଷ+ଣ = ଷ୍ଣ

ବୈଷ୍ଣବ ଭକ୍ତ ମଧ୍ୟେ ସାର । ସହିଷ୍ଣୁ ଗୁଣ ତା ଅପାର ।
କୃଷ୍ଣମୂରତ୍ତୀ , ବିଷ୍ଣୁ ରୂପ । ତୃଷ୍ଣାରେ କରେ , ପ୍ରେମାଳାପ ।

ଷ+ପ = ଷ୍ପ

ନିଷ୍ପାପ ହୃଦୟ ଯାହାର , ସେତ ପୁଷ୍ପ ସମାନ
ଜଳ ବାଷ୍ପ ହେବା ପରାୟ, ଖ୍ୟାତି ହୁଏ ନିଷ୍ପନ୍ନ ।

ଷ + ଫ = ଷ୍ଫ

ପାଟିରେ ନଧର , ଆଷ୍ଫାଳନ କଥା
ନିଷ୍ଫଳ ହୋଇବ , ସଦା ତୁ ଜାଣିଥା ।

ସ + କ =ସ୍କ

ପିତା ମାତା ଗୁରୁ, ଅତିଥି ଦେବତା ଏ ମାନଙ୍କୁ ନମସ୍କାର
ତିରସ୍କାର ବାଣୀ ନଧର ମୁଖରେ ଚିତ୍ତକୁ କର ସଂସ୍କାର

ସ + ଖ =ସ୍ଖ

ଭୂସ୍ଖଳନରୁ ପୃଥ୍ୱୀ ଦବଇ । ବ୍ରହ୍ମ ସ୍ଖଳନରୁ ଆୟୁ କମଇ
ଧର୍ମ ପଥୁ ମନ ହେଲେ ସ୍ଖଳିତ । ଇତର କୁଳରେ ହୋଇବ ଜାତ ।।

## ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)

**ସ + ତ = ସ୍ତ**




**ହସ୍ତକୁ ବିସ୍ତାରି ବୁଦ୍ଧିକୁ ପ୍ରସାରୀ**
**ମସ୍ତକକୁ ଶ୍ରୀ ଛାମୁରେ**
**ନାସ୍ତିକ ନହୋଇ ଆସ୍ତିକ ହୁଅ ହେ**
**ମୁକ୍ତି ପାଇବ ଧରାରେ**
**ଖରାପ ପୁସ୍ତକ ଅସ୍ତହେଉ ମନୁ**
**ଶାସ୍ତାରୁ ହେବ ହିନସ୍ତା**
**ତୋ ଜୀବନ ଯଦି ବ୍ୟସ୍ତରେ ରଖିବୁ**
**ଏକା ଭାଗବତ ଗୀତା ।**

**ସ + ଥ = ସ୍ଥ**



ସ୍ଥିର କରି ମନ ଯୌବନେ , ଧର କର୍ମ ସଂସ୍ଥାନ
ଅକର୍ମା ହୋଇଲେ ଦୁଷ୍କର୍ମ ସିନା ସହାବ ସ୍ଥାନ ।
ଆସ୍ଥାନ ଜମାଇ ରହିବେ , ଦୁଃଖ କଷ୍ଟ ଯାତନା
ସବୁ ଆସ୍ଥା ତୋର ତୁଟିବ , ଲାଭ ହିନସ୍ଥା ସିନା ।

**ସ+ପ = ସ୍ପ**

**ମନେଯାରଦୃଢ ବିଶ୍ୱାସ , ସେତ ଇସ୍ପାତ ପରି**
**ନିନ୍ଦା ଅପବାଦ ତାହାକୁ ସ୍ପର୍ଶ ନପାରେ କରି ।**

**ସ+ଫ = ସ୍ଫ**



ସ୍ଫଟିକ ନହୁଏ କେବେ , କାଞ୍ଚନ ସମାନ
ପସନ୍ଦ ନ ହୁଏ କାର କଥା ଆସ୍ଫାଳନ
ଦିନେ ନା ଦିନେ ସତ୍ୟତା ହୁଅଇ ସ୍ଫୁଟନ
ସାମାନ୍ୟ ସ୍ଫଲିଙ୍ଗ ଦ୍ୱାରା ସର୍ବସ୍ୱ ଦହନ ।

**କ+ତ+ର=କ୍ତ୍ର**

ଶକ୍ତ୍ରଧନୁ ସପ୍ତ ରଙ୍ଗରେ , ଆହା କି ମନୋହର
ରବିକର ଜଳ ବିନ୍ଦୁ ହିଁ , ଯାର ମୁଖ୍ୟ ଆଧାର ।

## ସଂଯୁକ୍ତ ଯୁକ୍ତାକ୍ଷର(କ୍ରମଶଃ)



**କ+ଷ+ଣ=କ୍ଷ୍ଣ**

ସବୁ କାଟେ ମୂଷା ତୀକ୍ଷ୍ଣ ଦାନ୍ତରେ
ତୀକ୍ଷ୍ଣଧୂଷା ଲାଗେ ଦେବ ପୂଜାରେ ।

**କ+ଷ+ମ=କ୍ଷ୍ମ**

କର୍ମମୟ ଏହି ସଂସାର , ସୂକ୍ଷ୍ମଦର୍ଶୀ ନିଶ୍ଚିତ
ଲକ୍ଷ୍ମୀଛଡା ନିଜ ଭାଗ୍ୟକୁ , ନିନ୍ଦାକରେ ବହୁତ ।

**କ+ଷ+ୟ = କ୍ଷ୍ୟ**

ବଳିଷ୍ଠ ମନରେ କର୍ମଠ , କରେ ଲକ୍ଷ୍ୟ ପୂରଣ
ମିଥ୍ୟା କହିବନି ଜୀବନେ ଦେଲେ ସାକ୍ଷ୍ୟ ପ୍ରଦାନ ।

**ଙ+କ+ତ = ଙ୍କ୍ତ**

**ଭାବେ ମୁଗ୍ଧହେଲେ ଜନତା , ଶୁଣି ଗୀତାର ପଙ୍କ୍ତି**
**ଗୀତା ପିତା ହିତ ଅଟଇ , ଏହା ସାଧୁଙ୍କ ଉକ୍ତି ।**

**ଙ+କ+ଷ = ଙ୍କ୍ଷ**          **ଜ+ଜ+ବ =ଜ୍ଜ୍ୱ**

ହିତାକାଙ୍କ୍ଷୀ ବନ୍ଧୁ ପୁରାଣ , କଲେ ଆକାଙ୍କ୍ଷା ମୋର
ମଳିନ ବଦନ ଉଜ୍ଜ୍ୱଳ, ପ୍ରସ୍ଫୁଟିତ ଏଥର

**ଣ+ଡ+ର = ଣ୍ଡ୍ର**

ପୌଣ୍ଡ୍ରକ ବାସୁଦେବ ଅତିଗର୍ବରେ
ହରିତିଳକ ନାଇ ପୌଣ୍ଡ୍ରଦେଶରେ ।
କହି ବୁଲଇ ଆପେ , ଶ୍ରୀ କୃଷ୍ଣ ମୁହିଁ
ମୋ ପରି ବୀର ଏହି ଭୁବନେ ନାହିଁ ।



**ତ+ତ+ବ = ତ୍ତ୍ୱ**

**ସାତ୍ତ୍ୱିକ ଆହାର ଯାହାର । ମାନବ ମଧ୍ୟେ ସେହି ସାର ।**
**ସତ୍ତ୍ୱ ଗୁଣର ଅଧିକାରୀ । ତାହାଙ୍କୁ ରଖନ୍ତି ଶ୍ରୀ ହରି ।**
**ବୁଝି କହିବ ଭାଷାତତ୍ତ୍ୱ । ଜଗିବ ମାନ ଓ ମହତ୍ତ୍ୱ ।**

# ସଂଯୁକ୍ତ ଯୁକ୍ତାକ୍ଷର (କ୍ରମଶଃ)



**ତ+ତ+ର = ତ୍ତ୍ର**

ଧର୍ମବନ୍ତେ କୁଳେ ଜନ୍ମଇ , ପୁତ୍ର ଉତ୍ତମ ଜାଣ ।
ଘୋଡା ମୁହାଁ ପୁତ୍ତ୍ର ଅଟଇ ବିନାଶର କାରଣ ।

**ତ+ମ+ୟ = ତ୍ମ୍ୟ (ମ୍ୟ)**

କେଡେ ମୂର୍ଖ କଂସ ବୁଝିଲା ନାହିଁ କୃଷ୍ଣ ମାହାତ୍ମ୍ୟ
ଅଘା ବକା ପେଶି ଗୋପରେ ଦେଖାଇଲା ଦୌରାତ୍ମ୍ୟ ।

**ତ+ସ+ନ = ତ୍ସ୍ନ**

କି ସୁନ୍ଦର ଜ୍ୟୋତ୍ସ୍ନା ପଡ଼ିଛି ଦେଖ ଧରା ପୃଷ୍ଠରେ
ଦିବା ରାତ୍ର ସମ ଲାଗୁଛି , ଭାବ ଆସେ ମନରେ ।



**ତ+ସ+ୟ = ତ୍ସ୍ୟ**

ମତ୍ସ୍ୟ ଅବତାରେ ନାଶିଲେ , ପ୍ରଭୁ ଶଙ୍ଖା ସୁରକୁ,
ମତ୍ସ୍ୟଗନ୍ଧା ମାତା ପ୍ରସବ , କଲେ ବ୍ୟାସ ଦେବଙ୍କୁ ।

**ନ+ତ+ୟ = ନ୍ତ୍ୟ**

ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟା , ସାରି ପୁତ୍ରଗଣ
ନିର୍ମଳ ମନେ ସମ୍ପତ୍ତି , କଲେ ବିଭାଜନ ।

**ନ+ତ+ର = ନ୍ତ୍ର**

ଆନ୍ତ୍ରିକ ଜ୍ୱରରେ ପୀଡିତ ଥିଲେ ମନ୍ତ୍ରୀଙ୍କ ଭାଇ
ସ୍ୱତନ୍ତ୍ର ଭାବରେ ଦେଖିଲେ , ବୈଦ୍ୟ ଯନ୍ତ୍ର ପକାଇ ।

**ନ+ତ+ବ = ନ୍ତ୍ୱ**

ସମୟେ ସମୟେ , ମଣିଷ ଜୀବନେ, ଆସେ ଅତ୍ୟଧିକ ଦୁଃଖ
ସାନ୍ତ୍ୱନା ଟିକିଏ , ପାଇଗଲେ ଭାଇ , ଭରିଯାଏ ମନେ ସୁଖ ।

## ସଂଯୁକ୍ତ ଯୁକ୍ତାକ୍ଷର (କ୍ରମଶଃ)

**ନ+ଦ+ର= ନ୍ଦ୍ର**

ଭାଗ୍ୟବଳେ ଆଜି ଉତ୍‌ଥାନ ହୋଇଲୁ , ଶକ୍ତିକରୁ କେନ୍ଦ୍ରୀଭୁତ
କାଲିପରା ଥିଲୁ , ଦୀନହିନ ଆଜି , ମାନୁନାହୁଁ ଇନ୍ଦ୍ରଚନ୍ଦ୍ର ।

**ନ+ଧ+ର=ନ୍ଧ୍ର**



ବିରାଟ ନଗରେ ସୈରିନ୍ଧ୍ରୀ , ପଞ୍ଚୁ ପାଣ୍ଡବ ଗଣ
ନାସାରନ୍ଧ୍ର ଭୀମ ଚିପିଣ , ନେଲେ କୀଚକ ପ୍ରାଣ ।

**ନ+ଧ+ଯ = ନ୍ଧ୍ୟ**



ମାଟି ବନ୍ଧ୍ୟା ଦୋଷ ନାଶନ୍ତି କୃଷକ
ମାଟିର ମଣିଷ ସେହି
କୃଷି କ୍ଷେତ୍ରେ କର୍ମ ତୀର୍ଥ କ୍ଷେତ୍ର ସମ
ତ୍ରିସନ୍ଧ୍ୟା ନୁହେଁକି ଭାଇ ।

**ନ+ନ+ଯ =ନ୍ନ୍ୟ, ମ+ପ+ର =ମ୍ପ୍ର**



ସମ୍ପ୍ରତି ସନ୍ନ୍ୟାସ ବେଶରେ, ଭ୍ରମଣ କରନ୍ତି ଦେଶରେ
ଗଢିଣ ନାନା ସମ୍ପ୍ରଦାନ । ଅସ୍ଥିର କରନ୍ତି ଶାସନ ।

**ମ+ଭ+ର =ମ୍ଭ୍ର, ର+ଚ+ଚ=ର୍ଚ୍ଚ**



ସମ୍ଭ୍ରାନ୍ତ ବେଶରେ ରାଜଜେମା ଗଲେ
ଦାସୀ ସହଚରୀ ମିଳି
ଚର୍ଚ୍ଚିକା ମନ୍ଦିରେ ପୂଜାର୍ଚ୍ଚନା କଲେ
ହୁଳହୁଳି ଦୀପଜାଳି ॥

**ର+ଚ+ଛ = ର୍ଚ୍ଛ, ର+ଣ+ଣ=ର୍ଣ୍ଣ**

ସଙ୍ଗୀତର ମୂର୍ଚ୍ଛନାରେ , ମଜିଗଲା ମନ
ରାଧାକୃଷ୍ଣ ରାସ ନିତ୍ୟ , ଗୋପବୃନ୍ଦାବନ
ପ୍ରଭୁ ଜଗତ ଜୀବନ
ଚୂର୍ଣ୍ଣ କର ପାପ ତାପ , ଇଚ୍ଛାକର ପୂର୍ଣ୍ଣ ।

# ସଂଯୁକ୍ତ ଯୁକ୍ତାକ୍ଷର (କ୍ରମଶଃ)



**ର+ତ+ତ=ର୍ତ୍ତ**

ରାଧାକୃଷ୍ଣ ମୂର୍ତ୍ତୀ ଦୋଳବିମାନରେ
ବୁଲାନ୍ତି କରି କିର୍ତ୍ତନ
ନର୍ତ୍ତକ ନର୍ତ୍ତକୀ ବେଶରେ ନାଚନ୍ତି
ନାମ ପ୍ରେମ ଆର୍ତ୍ତତ୍ରାଣ

**ର+ଦ+ଦ = ର୍ଦ୍ଦ,   ର+ଦ+ଧ = ର୍ଦ୍ଧ**



ଧରିଲେ ଗର୍ଦ୍ଦଭ ପାଦ ମୋହନ
ଜରାସନ୍ଧ ଗର୍ବ , କଲେ ମର୍ଦ୍ଦନ
ମାଡିବସି ଭୀମ , ଶାର୍ଦ୍ଦୁଳ ପରି
ଦୁଇଫାଳ କଲେ , ମୂର୍ଦ୍ଧନା ଚିରି ।

**ର+ତ+ସ = ର୍ତ୍ସ,   ର+ଦ+ର = ର୍ଦ୍ର**



ଭର୍ତ୍ସନା କାହାକୁ , କରନାହିଁ ଭାଇ
କ୍ଷମା ତାକୁ ଦିଅ , ଦୋଷଥିଲେ କହି ।
ଆର୍ଦ୍ରତାରେ ଭରିଯିବ ତାର ମୁଖ
ତବପାଶେ ସଦା ତା ନତ ମସ୍ତକ ।

**ର+ଯ+ୟ = ର୍ଯ୍ୟ**

ସୂର୍ଯ୍ୟଙ୍କୁ ପୂଜିବ ପ୍ରତି ପ୍ରଭାତରେ ଭକ୍ତି ଭାବେ ଦେଇ ଜଳ
ସୌର୍ଯ୍ୟ ବୀର୍ଯ୍ୟ ଧୈର୍ଯ୍ୟ, ଭୋଗିବ ଐଶ୍ୱର୍ଯ୍ୟ ସହନ ଶକତି ବଳ ।



**ର+ଶ+ବ =ର୍ଶ୍ୱ, ଷ+କ+ର = ଷ୍କ୍ର**

ଭୀଷ୍ମ ଦ୍ରୋଣ କର୍ଣ୍ଣ ଚତୁଃ ପାର୍ଶ୍ୱୁ ତାର
ଛାଡି ଗଲେ ଜଣେ ଜଣେ
ନିଷ୍କ୍ରିୟ ହୋଇଣ ମାନୀ ଦୁର୍ଯ୍ୟୋଧନ
ବସିଛି ଚିନ୍ତିତ ମନେ ।

## ସଂଯୁକ୍ତ ଯୁକ୍ତାକ୍ଷର (କ୍ରମଶଃ)



**ଷ+ଟ+ର = ଷ୍ଟ୍ର, ଷ+ପ+ର = ଷ୍ପ୍ର**

ସଂସାରରେ ଯିଏ ଧରିଛି , ପ୍ରଭୁ କୃଷ୍ଣ ଚରଣ ।
ରାଷ୍ଟ୍ରପତି ଭଳି ପଦବୀ , ତାର ନିଷ୍ପ୍ରୟୋଜନ ।

**ସ+ତ+ର = ସ୍ତ୍ର**

କବି ଯଦୁମଣି ତର୍କଶାସ୍ତ୍ରେ ହାଣି ପକ୍ଷଙ୍କୁ ପରାସ୍ତ କଲେ
ଖୁସିରେ ରାଜନ ବସ୍ତ୍ର ଆଭୂଷଣ ଶିରସ୍ତ୍ରାଣ ଯେ ବାନ୍ଧିଲେ ।

**ସ+ଥ+ୟ = ସ୍ଥ୍ୟ , ନ+ତ+ର+ୟ =ନ୍ତ୍ର୍ୟ,**

**ର+ତ+ତ+ୟ = ର୍ତ୍ତ୍ୟ**



ଆର୍ଯ୍ୟ ସମାଜରେ ଗାର୍ହସ୍ଥ୍ୟ ଜୀବନ
ନୀତିମୟ ଥିଲା ଅତି
ସ୍ୱାସ୍ଥ୍ୟ ବାନ ଥିଲେ ସର୍ବ ନରନାରୀ
ଦେବାରାଧନାରେ ପ୍ରିତୀ ।୧।
ଅନ୍ୟାୟ ଅନୀତି , କୁକର୍ମ ଦୁର୍ନୀତି
ଏଥି ପ୍ରତି ଥିଲା ଭୟ
ସ୍ୱାତନ୍ତ୍ର୍ୟତା ସ୍ଥାନ ଲଭି ଏ ମର୍ତ୍ତ୍ୟରେ
ଦୀର୍ଘଜୀବୀ , ନିରାମୟ ।

**ର+ତ+ତ+ର=ର୍ତ୍ତ୍ର, ର+ଦ+ଧ+ବ=ର୍ଦ୍ଧ୍ୱ**

କାର୍ତ୍ତା କର୍ତ୍ତ୍ରୀ ଦୁଇ ପ୍ରଫୁଲ ଚିତ୍ତରେ ଊର୍ଦ୍ଧ୍ୱରେତାଃ ସେବାକରି
କୋଳକୁ ମଣ୍ଡନ କରିଲେ ନନ୍ଦନ ଶୂନ୍ୟଘର ଗଲା ପୁରୀ ।



**ନ+ଦ+ବ =ନ୍ଦ୍ୱ**

ମହାଭାରତରେ ଗଦାଯୁଦ୍ଧ କଲେ
ଦ୍ୱିନ୍ଦ୍ୱୀ ଭୀମ , ଦୁର୍ଯ୍ୟୋଧନ
କୃଷ୍ଣଙ୍କ ଈସାରା ପାଇ ବୃକୋଦର
କରିଥିଲା ଜାନୁଭଗ୍ନ ।



# -:ମିଠା:-





ଚିନି ମିଠା ବୋଲି କିଏ ସେ କହୁଛି
କିଏ କହୁଛି ନବାତ
ମିଠା ମିଠା ଫଳ କିଏ ବା କହୁଛି
ସବୁଠୁ କଥା ଅମୃତ ।



ସେ ଅମୃତ ବାଣୀ ଦେଇ ଯାଆ ବାଣ୍ଟି
ଧନ୍ୟ ହେବୁ ଏ ଧରାରେ
ଦୟା ମାୟା ହରି କୃପାକରି ଥାନ୍ତୁ
ଦୁଃଖ ମାୟା ପାରାବାରେ ।

# -:ପିତା :-



ଲିମ୍ବ ଓ କଲରା ଫଳ ଅଷାଡୁଆ
ପାଟିକୁ ପିତା ଲାଗଇ
ଜିଭ ସିନା କହେ , ଥୁଉ ଥୁଉ ବୋଲି
ଦେହକୁ ହିତ ଅଟଇ ।୧।



ପରନିନ୍ଦା ପର କୁତ୍ସାରଟନା ହିଁ
ଖୋଜୁଥାଇ ମନକର୍ଣ୍ଣ
ଏ ପ୍ରକୃତ ପିତା ମନୁକର ତେଜ୍ୟା
ସେ ପିତା କର ଭୋଜନ ।୨।

# -:ପ୍ରଭାତ:-



ଶୋଭାମୟ ପୂର୍ବ ଆକାଶ , ଦିଶେ କି ମନୋହର ।
ଫାଟି ଆସିଲାଣି ସିନ୍ଦୁରା , ରାତ୍ରି ଯିବ ଏଥର ।୧।
ଦିବସ ଆଭାସ ପାଇଣ , ପକ୍ଷୀ ଆନନ୍ଦ ଅତି
କୂଜନେ ବିଜନ ସମୟ କୋଳାହଳ କରନ୍ତି ।୨।
ଉଠ ଉଠ ମଠ ନକର , ଆହେ ପୃଥିବୀ ବାସୀ
ବ୍ରାହ୍ମ ମୂହୁର୍ତ୍ତ ଏ ସମୟ , ସୂର୍ଯ୍ୟ ନାହାନ୍ତି ଆସି ।୩।

ଏ ସମୟେ ଯେଉଁ ମାନବ , କରେ ବିଭୁ ବନ୍ଦନା
ଜ୍ଞାନ, ଧନ, ବଳ, ଲଭଇ,ଏହି ଜଗତେ ସିନା ।୪।
ଚାହୁଁ ଚାହୁଁ ରବି ଆସିଲେ , ହସି ହସି ଆକାଶେ
ଜଳ ସ୍ଥଳ ବନ ପାହାଡ ଶୁଭ୍ର ବରନ ଦିଶେ ।୫।
ନିରବ ଧରଣୀ ଉଠିଲା କୋଳାହଳ ହୋଇଣ
ଯେଯାହାର କର୍ମ କରିଲେ ଏତ ସଂସାର ଗୁଣ ।୬।





ଦେବ ମନ୍ଦିରରୁ ଓଁ କାର , ନାଦ ନଭେ ମିଶଇ ।
ହଳ ଲଙ୍ଗଳକୁ ଧରିଣ , ଚାଷୀ କ୍ଷେତେ ଗମଇ ।୭।
କୁଳ ବଧୂମାନେ ସ୍ନାହାନ ସାରି ଆସନ୍ତି ଗୃହ
ବିଦ୍ୟାଲାଭ ପାଇଁ ଯାଉଛି , ଶିଷ୍ୟ ହୋଇ ଆଗ୍ରହ ।୮।
ପଶୁ ପକ୍ଷୀ ନର ନାରୀଏ , ବ୍ୟସ୍ତ ଯେଝା କାମରେ
ସତ୍ୟ ଧର୍ମ ପଥ ଆଶ୍ରୟ , କର୍ମମୟ ସଂସାରେ ।୯।



# -:ସନ୍ଧ୍ୟା:-

ସୃଷ୍ଟିର ନିୟମ , ଏଧରା ପୃଷ୍ଠରେ, ସଭିଙ୍କର ଅଛି କ୍ଷୟ ।
ହସ କାନ୍ଦ ସୁଖ ଦୁଃଖ ଦିନ ରାତି , ଏଇତ ଭୁବନ ମାୟ ।
ଶୁଭ୍ରଜ୍ୟୋତିରାଶି , ପ୍ରକାଶିଣ ପୃଥ୍ୱୀ , କରୁଥିଲେ ଆଲୋକିତ
ଶ୍ୟାମଳ ସୁଷମା, ବନ ଅରଣ୍ୟାନି, ଫୁଲ ଫଳ ପ୍ରସ୍ଫୁଟିତ ।
ମଧ୍ୟାହ୍ନରେ ସେଇ, ଦୀପ୍ତି କାନ୍ତି ଜ୍ୟୋତି, ମଉଳି ଗଲାଣି ବଳ
ହସି ହସି ଦିନମଣି ଆକାଶରେ , ଗଲେ ଅସ୍ତାଚଳ ଚୂଳ
ପ୍ରଖର କିରଣ ତେଜିୟାନ ଗୁଣ ନ ଥିଲେ ନାହିଁ ଶରୀରେ ।
ଜନମ ମରଣ ଉତ୍‌ଥାନ ପତନ , ଲାଗିଛି ଏହି ସଂସାରେ ।
ଅପରାହ୍ନଠାରୁ , ସାୟଂ କାଳଯାଏ , ତେଜବଳଜ୍ୟୋତିହ୍ରାସ
ପାଣ୍ଡୁର ବରନ ଧାରଣ କରିଲେ , ଅନ୍ଧକାର କଲା ଗ୍ରାସ ।
ଅଂଶୁମାଳୀ ପରି, ଦିପ୍ତୀ କାନ୍ତି ଛଟା, ଶେଷରେ ଗଲେ ମଉଳି
କେତେଦିନ ପାଇଁ, ଅଭିମାନ କରି ହେଉଅଛୁ ବଳଶାଳୀ ।
କାବ୍ୟ , କାବ୍ୟକାର କହିଯାଇଛନ୍ତି , ଜଳିବନି ଆଉ ଦୀପ
କରାଳ ଗର୍ଭରେ , ଲୀନ ହୋଇଯିବୁ , ଯିବ ଜୀବନ ପ୍ରଦୀପ ।
ସଂନ୍ଧ୍ୟାତ ଆସିବ, କିଏ ବା ରୋକିବ , ଜାଗି ସଂନ୍ଧ୍ୟା ଦୀପ ଜାଳ
ସେ ଦୀପ ଜଳିଲେ , ଜୀବନ ପ୍ରଦୀପ , ଲିଭିବନି କାଳ କାଳ ।



# -:ଆନନ୍ଦ:-



ମିଛ କହି କିଏ ପାଉଛି ଆନନ୍ଦ
ପରକୁ ପିଡାଦେ କ ଦେଇ
ଦୀନ ହିନ ରୋଗୀ , ଦୁଃଖି ସେବା କରି
ଆନନ୍ଦ କିଏ ଲଭଇ ।୧।

ପର ସେବା କରି ବାରେ ଯା ଜୀବନ
ସେଇତ ପରା ଆନନ୍ଦ
କୃଷ୍ଣ ପ୍ରେମ ସ୍ରୋତେ ଯେ ଭାସଇ ନିତ୍ୟେ
ସେତ ପରା ମହାନନ୍ଦ ।୨।



# -:ଗୁରୁ ବନ୍ଦନା:-

ଗୁରୁ ତୁମେ ପିତା , ଗୁରୁ ତୁମେ ମାତା , ଗୁରୁ ତୁମେ ଇଷ୍ଟ ଦେବ ।
ଗୁରୁ ତୁମେ ବ୍ରହ୍ମା , ଗୁରୁ ତୁମେ ବିଷ୍ଣୁ , ମଙ୍ଗଳ ମୂରତି ଶିବ । ୧।
ତୁମେତ ଗଢିଛ ଏ ଜୀବନ ଆମ , କଲ ଦୂର ଅନ୍ଧକାର
ଆଲୋକର ଶିଖା, ଜାଳିଦେଇ ଗୁରୁ , ଦେଲ ଜ୍ଞାନର ଭଣ୍ଡାର ।୨।
ସେ ଜ୍ଞାନ ବଳରେ , ବିଭୁପ୍ରେମ ନୀରେ , ଅହରହ ଭାସି ଭାସି
ଅମୃତର ପାନ , କରି ଆମେ ଧନ୍ୟ , କାଳିମାକୁ ଦେଲୁ ନାଶି
ଗୁରୁ ତୁମେ ସତ୍ୟ , ଗୁରୁ ତୁମେ ନିତ୍ୟ ତୁମେ ସର୍ବଶକ୍ତିମାନ
ଗୁରୁ ତୁମେ ପୂଜ୍ୟ, ଗୁରୁତୁମେ ଭଜ୍ୟ, ଏ ଦେହର ତୁମେ ପ୍ରାଣ
ଗୁରୁ ତୁମେ ଗୁରୁ , ଆହେ ସଦ ଗୁରୁ , ଗୁରୁ ମୋ ପ୍ରଣତି ଘେନ
ଗୁରୁ ତୁମ ପଦେ , ଶରଣ ଦେଇଣ , ଏ ଜୀବନ କର ଧନ୍ୟ ।





# -:ଫୁଲ:-



ସବୁଜ ବନାନୀ, କାନନେ, କାନନେ, ଫୁଟୁଛୁରେ ଫୁଲ ତୁହି
ଗଛଲତା ସହ , ଏ ଧରଣୀ ବୁକୁ , ଆହା କେଡେ ଶୋଭାମୟୀ ।
କେତେ ରଙ୍ଗେ ରଙ୍ଗେ , ବିରାଜ ମାନ ତୁ , ନବ ଋତୁ ଆସିଲାରୁ
କେତେ ବେଳେ ଫୁଟୁ, ପ୍ରଭାତ ପ୍ରଦୋଷେ, କେତେବେଳେ ନିଶିଥରୁ ।



କି ଗୁଣ ଭରିଛି , ବିଧାତା ତୋଠାରେ, ହୁଅ ତୁ ଯେଉଁ ରଙ୍ଗର
ସର୍ବ ଦେବଦେବୀ , ମାନବ ମାନବୀ , ପ୍ରିୟ ପାତ୍ର ସବୁରିର ।
ତୁ ଯେଉଁ ସ୍ଥାନରେ ରହିଥାରେ ଫୁଲ, ମନ କେତେ ପ୍ରଫୁଲିତ
ବୃକ୍ଷଡାଳେ ରହି , ପବନର ସାଥେ, ଖେଳି କେତେ ଆନନ୍ଦିତ, ।



ଜ୍ଞାତରେ ହେଉକି ଅଜ୍ଞାତରେ ହେଉ , କିଏ ବା ପକାଏ ତୋଳି
କେତେ ତୋ ସହନ, ଶକତିରେ ଫୁଲ , କରୁନାହୁଁ ଟିକେ ଅଳି ।
କେତେ ନିରିମଳ , କେତେ ତୁ କୋମଳ , କି ବାସ ରଖିଛୁ ତୁହି
ସେ ଗୁଣରୁ ଟିକେ ଦିଏରେ କୁସୁମ , ଧନ୍ୟ ହୋଇଯାନ୍ତି ମୁହିଁ ।
ଦିଏବା ନଦିଏ, ସେ ଗୁଣରୁ ତୁହି , ତୋତେ ମୋର ନମସ୍କାର
ଗୁରୁ ତୋତେ ମୁହିଁ, କରିଲିରେ ଫୁଲ, ଦୋଷ ଥିଲେ କ୍ଷମାକର ।

# -:ଓଡିଆ ବାରମାସ, ମାସ.ଋତୁ:-

କାଳକୁ କଳିବା, ପାଇଁକି ମରତ୍ତେ, ଜନମି ନାହାଁନ୍ତି କେହି
ତଥାପି ମଣିଷ ତିଆରି କରିଲା , ହିସାବ ରଖିବା ପାଇଁ
ସାତ ବାର ନେଇ, ଗଢିଲା ସପ୍ତାହ, ବାର ମାସରେ ବରଷ
ଦୁଇ ଦୁଇ ମାସ , ନେଇ ବାରମାସ , ଛଅ ଋତୁ କଲା ଶେଷ
ସାତବାର , ଛଅଋତୁ ବାରମାସ , ବାର ବରଷରେ ଯୁଗ
ଶହେ ବରଷରେ ଶତାବ୍ଦୀ କହଇ , ଦିନ ମାସ ହୁଏ ଭୋଗ

ରବି ପରେ ସୋମ, ତାପରେ ମଙ୍ଗଳ , ତାପରେ ଯେ ବୁଧବାର
ଗୁରୁ, ଶୁକ୍ର ଶନି ଆସେ କ୍ରମାନ୍ୱୟେ , ସାତ ବାର ଏ ପ୍ରକାର
ସାତ ବାର ନେଇ ସପ୍ତାହ ହୁଅଇ , ପକ୍ଷେ ପନ୍ଦର ଦିବସ
ଶୁକ୍ଲ ପକ୍ଷ କୃଷ୍ଣ ପକ୍ଷ ମିଶିଗଲେ , ହୁଅଇ ଯେ ଏକ ମାସ ।
ପ୍ରତିପଦା ଠାରୁ ଚତୁର୍ଦ୍ଦଶୀ ଯାଏଁ , ଅମାବାସ୍ୟା ପଞ୍ଚଦଶ
ଅଳ୍ପ ଅଳ୍ପ ଛିଡି ଚନ୍ଦ୍ରମା ଉଦିତ , ଅମାବାସ୍ୟା ଦିନଶେଷ ।

ଶୁକ୍ଳ ପକ୍ଷେ ଚନ୍ଦ୍ର ବଢିବଢିଯାଇ, ପୁର୍ଣ୍ଣଚନ୍ଦ୍ର ପୂର୍ଣ୍ଣିମାରେ
ଚନ୍ଦ୍ରଙ୍କର ଏହି ହ୍ରାସ ବୃଦ୍ଧି ହୁଏ , ଘଡି ଜ୍ୟୋତିଷ ଶାସ୍ତ୍ରରେ ।
ଚନ୍ଦ୍ର କ୍ଷୟ ଯୋଗୁଁ ତିଥି ହ୍ରାସ ହୁଏ , ତିନି ବରଷରେ ଥରେ
ଦୋ ମାସୀ ପଡିଲେ ମଳ ମାସ ହୁଏ , କହନ୍ତି ସାରା ସଂସାରେ
ବାରମାସେ ବାରରାଶି ହୁଏ ଭୋଗ , ସତାଇଶ ନକ୍ଷଇତ୍ର
ଆ'କୁ ଧରି ନବ ଗ୍ରହ ଗତାଗତ , ଏଇତ ଜ୍ୟୋତିଷ ଶାସ୍ତ୍ର

# ମାସ ଓ ଋତୁ / ଋତୁ ବର୍ଣ୍ଣନା



## ଗ୍ରୀଷ୍ମ



ବଇଶାଖ ଜ୍ୟେଷ୍ଠ , ଏଇ ଦୁଇମାସ , ଗ୍ରୀଷ୍ମ ଋତୁ ନାମ କହି
ପ୍ରଖର , କିରଣ, ସୂର୍ଯ୍ୟଙ୍କର ଜାଳ , ସନ୍ତାପିତ ହୁଏ ମହି ।
ଶୁଷ୍କ ହୋଇଯାଏ , ନଈ ନାଳ କୂଅ , ତଡାଗ ପୋଖରୀ ପାଟ ,
ନର ନାରୀ ପଶୁ , ପକ୍ଷୀ ସର୍ବଜୀବ, ଜଳବିନା ଛଟପଟ ।
ହଳକାମ କରେ , ଚଷାଭାଇ ଆମ , ଆଗାମୀ ଫସଲ ପାଇଁ
ମାଟିର ମଣିଷ , ଚିର ନମସ୍ୟ ସଂସାରକୁ ପାଳୁ ଥାଇ ।



## ବର୍ଷା



ଆଷାଢ ଶ୍ରାବଣ ଆହାକି ବର୍ଷଣ , ମେଘଧରି ଭୀମ ରୂପ
ବଜ୍ର ବାଣ ଦେଇ , ବିଜୁଳି ନଚାଇ, ଭାଙ୍ଗିଲା ଗ୍ରୀଷମ ତାପ ।
ସର୍ବ ଜୀବକୁଳ , ଏ ମହୀମଣ୍ଡଳ , ହେଲେ ସର୍ବେ ଆନନ୍ଦିତ
ଶୁଷ୍କ ଜଳାଶୟ , ଜଳେ ପରିପୂର୍ଣ୍ଣ , ହସେ ନାନାମତେ କ୍ଷେତ ।
ଦୂର ଦିଗ୍‌ବଳୟେ , ସପ୍ତରଙ୍ଗଧରି ଇନ୍ଦ୍ରଧନୁ କି ସୁନ୍ଦର
ନାଲି ଟୁକୁଟୁକ ସାଧବ ବୋହୂ ଲୋ, ମୋହି ନେଉ ମନ ମୋର ।



## ଶରତ

ଭାଦ୍ରବ ଆଶ୍ୱିନ, ନିର୍ମଳ ଆକାଶ , ଶରତ ଋତୁ ଲକ୍ଷଣ
ପୂଜା ପାର୍ବଣର ଋତୁ ପରା ଏହି ଗୋପରେ ନନ୍ଦନନ୍ଦନ ।
ଶାରଦୀୟ ଜହ୍ନ ଦେଖିଣ ମୋହନ , କଲେ କାଳୀୟ ଦଳନ
ଦୁର୍ଗା ଦେବୀ ସାହା , ହୋଇବାରୁ ପ୍ରଭୁ , ରାମ ବଧିଲେ ରାବଣ

## ହେମନ୍ତ



ହେମନ୍ତ ଋତୁ ଯେ , ଏ ଧରା ପୃଷ୍ଠରେ , କାର୍ତ୍ତିକ ଓ ମାର୍ଗଶୀର
ଅଳ୍ପ ଅଳ୍ପ ଶୀତ , ସୂଚନା ଦେଉଛି , ରାତିରେ ପଡେ କାକର ।
ସୁବର୍ଣ୍ଣ ବରନ ଧାରଣ କରିଛି , କି ସୁନ୍ଦର କ୍ଷେତେ ଧାନ
ବଞ୍ଚି ବଞ୍ଚାଇବ ଆନନ୍ଦିତ ମନେ , ଦେଇଣ କୃଷକ ଅନ୍ନ ।



## ଶୀତ



ପୌଷ ମାଘ ମାସ , ପିନ୍ଧିଶୀତ ବାସ , ଶୀତ ଋତୁ ଆସିଲାରୁ
ବୃଦ୍ଧ ବୃଦ୍ଧା ପଶୁପକ୍ଷୀ ଥୁରୁଥୁରୁ , ପତ୍ର ଝଡା ଦିଏ ତରୁ ।
ହାଟବଜାରରେ ପରିପୂର୍ଣ୍ଣ ହୁଏ , ନାନାଦି ପନିପରିବା ,
ଶୀତ ପ୍ରକୋପରୁ , ବରତିବା ପାଇଁ , ନିଆଁ ଧୂନି ହୁଏ ଅବା ,
ହସୁଥିଲେ ଲକ୍ଷ୍ମୀ ଗହିର ଗଣ୍ଡାରେ , ବିଜେ ଆମ ଖଳା ବାରି
ଆମ୍ବ ବଉଳର ମହକେ ମହକେ , ହସି ଉଠେ ମର୍ତ୍ତ୍ୟ ପୁରୀ ।



## ବସନ୍ତ

ଫାଲଗୁନ ଚୈତ୍ର,ଋତୁଯେ ବସନ୍ତ , ମଳୟ ବହଇ ଧିରେ
ଖରା, ବର୍ଷା,ଶୀତ , ନାହିଁ ପ୍ରାଦୁର୍ଭାବ,କୋଇଲି ପଞ୍ଚମ ସ୍ୱରେ ।
ମହମହ ବାସ ଗୋଲାପର ହାସ , ଚମ୍ପା ଆଉ ନାଗେଶ୍ୱର
ଯାନିଯାତରାରେ ଭରିଯାଏ ମାସ , ହରିନାମ ଓମ୍ କାର
ଦୋଳ ବିମାନରେ , ରାଧାକୃଷ୍ଣ ମୂର୍ତ୍ତୀ, ମେଳଣ କେଡେ ସୁନ୍ଦର
ଫଗୁ ଦଶମୀରୁ , ଗୋପପୁର ବାସୀ , ଖେଳୁଥିଲେ ଯେ ଅବିର
କୁମୁଦ କମଳ , ପୁଷ୍କରିଣୀ ଜଳ , ଋତୁ ରାଜ ଯେ ବସନ୍ତ
ଷଡ ଋତୁ ଭୋଗ , ହୁଏ ଏହିପରି , ସୂର୍ଯ୍ୟ ଚନ୍ଦ୍ର ଚକ୍ରବତ୍ ।




# -:ଇଂରାଜୀ ମାସ :-




ୀ, ଫେବୃୟାରୀ, ମାର୍ଚ୍ଚ , ଓ ଏପ୍ରି
ମଇ, ଜୁନ୍ , ଜୁଲାଇ ଅଗଷ୍ଟ ଯେ କହିଲି

ସେପ୍ଟେମ୍ବର , ଅକ୍ଟୋବର , ନଭେମ୍ବର ମାସ
ଡିସେମ୍ବର ମିଶିଗଲେ , ବାର ମାସ ଶେଷ ।

Seasons













ଏପ୍ରିଲ , ଜୁନ୍ , ଆଉ ସେପ୍ଟେମ୍ବର ମାସ
ନଭେମ୍ବର ସହ ଦିନ ସଂଖ୍ୟା ଯେ ତିରିଶ

ଫେବୃୟାରୀ ମାସ ହୁଏ ଦିନ ଅଠାଇଶ
ବଳକା ମାସର ଦିନ ସଂଖ୍ୟା ଏକତ୍ରିଶ

ଚାରି ବରଷରେ ଥରେ , ପଡେ ଅଧିବର୍ଷ
ଫେବୃୟାରୀ ମାସ ହୁଏ ଦିନ ଅଣତ୍ରିଶ ।

ତିନି ଶହ ଛଅଷଠି ଦିନ ସେହି ବର୍ଷ
ଏହି ପରି ଭୋଗ ହେଉ , ଅଛି ବାରମାସ ।

Days of the Week

Monday
Tuesday
Wednesday
Thursday
Friday
Saturday
Sunday

# -:ଜଣାଣ:-




କୃଷ୍ଣ କେଶବ ହରି , ଦୀନ ବନ୍ଧୁ ମୁରାରି
ମୋ ପ୍ରାଣ ବିନ୍ଧୁଜଗନ୍ନାଥ
ନିଳକନ୍ଦର ନାଥ , ହେ ପ୍ରଭୁ ରାଧାନାଥ
ଘେନ ମୋହର ପ୍ରଣିପାତ । ।୧।



ତୁମ୍ଭେ ସଂସାର ସାର , ଆଉ ସବୁ ଅସାର
ଭାବ ଭକ୍ତିର ସୁର କଳା କହ୍ନାଇ
ଆଦ୍ୟ ସକାଳ ଧୂପ , ମୋ ମନ ନଇବେଦ୍ୟ
ଗ୍ରହଣ କର ଭାବଗ୍ରାହୀ ।
ଯୁଗେ ଯୁଗେ ଆସିଲ , ପାପ ଭାର ନାଶିଲ
ମୋ ମନ କାହିଁ କଳୁଷିତ ।
କୃଷ୍ଣ କେଶବ ହରି ——— ।୨।

କରୁଣା ସିନ୍ଧୁ ବାରି ବର୍ଷଣ କର ହରି
ମୋ ମନୁ ଷଡ ରିପୁ ନାଶ
ତୁମ୍ଭ ପ୍ରେମ ସ୍ରୋତରେ , ଭସାଅ ଅନୁକ୍ଷଣେ
ମୁଁ ଯେ ତୁମ ଦାସାନୁଦାସ ।
ହେ କୃଷ୍ଣ ନାରାୟଣ , ରକ୍ଷାକର ମୋ ପ୍ରାଣ
ତୁମ୍ଭେ ମୋ ଜୀବନର ପଥ ।
କୃଷ୍ଣ କେଶବ ହରି — ।୩।



## -:ମୁକ୍ତି ଚଉତିଶା:-

ଅଣାକାର ନାଥ ଅରୂପ ତାର ନାହିଁତ ସୀମା
ଅନାଦି ଅନନ୍ତ ଅଲେଖ , କିବା ଦେବା ଉପମା ।୧।
ଆଦ୍ୟ ପ୍ରାନ୍ତ କିବା ବର୍ଣ୍ଣିବା, ତାଙ୍କୁ ସେ ନିରାକାର
ଆତ୍ମା ପରମାତ୍ମା ରୂପରେ , ବିଜେ ବିଶ୍ୱ ସଂସାର ।୨।
ଇଛାମୟ ଇହ ଜଗତେ ସେବ ନାହିଁ କାରଣ
ଇହଲୀଳା ଶେଷ ପୂର୍ବରୁ ମନ, ପଶ ଶରଣ ।୩।
ଈଶ୍ୱର ଈଶ୍ୱରୀ ପରମ ଜୀବ ମୁକତି ଦାତା
ଈର୍ଷା ତେଜ୍ୟାକଲେ ଲଭିବୁ ମନ ଇଷ୍ଟ ଦେବତା ।୪।
ଉଚ୍ଚାଟନେ ଉଚ୍ଚ ସ୍ୱରରେ କର ପ୍ରଣବ ଧ୍ୱନି
ଉତ୍ପନ୍ନ ହୋଇବ ପରମ ସୁଖ ଦେବ ଉଜାଣୀ ।୫।
ଊର୍ଦ୍ଧ୍ୱ ରେତାଃ ପଦ ପାଇବୁ ଯିବୁ ଊର୍ଦ୍ଧ୍ୱ ଲୋକକୁ
ଊର୍ଦ୍ଧ୍ୱ ସ୍ୱଳ ନିକ୍ଷେ ହୋଇବୁ ଥିବୁକାଳ କାଳକୁ ।୬।
ଋତୁ ଅନୁଯାୟୀ ଧରଣୀ ଯଥା ଯାଏ ବଦଳୀ
ଋଷ୍ଟ କଳି କାଳ ରହିଛି ଚାହିଁ ଦେବଟି ଗିଳି ।୭।



ଏକେଶ୍ୱର ବାଦ ଚିନ୍ତନେ ମନ ସାରରେ ଦିନ
ଏକାନ୍ତରେ ବସି ହେଉଥା, ବିଭୂ ପ୍ରେମେ ମଗନ ।୮।
ଐନ୍ଦ୍ରଜାଲ ପରି ବ୍ୟାପିଛି , ଏହି ମାୟା ସଂସାର
ଐରି ମାନେ ଘେରି ଅଛନ୍ତି , କରିବେ ଛାରଖାର ।୯।
ଓଜଃ ଶକ୍ତି ଏକା ସହାୟ ହେବା ପାଇଁ ଔଜଲ୍ୟ
ଔଦ୍ଧତ୍ୟ ଭାଙ୍ଗିବ ଯମର ପ୍ରାପ୍ତ ହେବୁ କୈବଲ୍ୟ ।୧୦।
କଳିଯୁଗ ଶ୍ରେଷ୍ଠ ଅଟଇ ଚାରିଯୁଗ ମଧ୍ୟରେ ,
କୃଷ୍ଣନାମ କୃଷ୍ଣ ମୂରତୀ ନୌକା ଭବ ସାଗରେ ।
ଖଳ ପ୍ରକୃତିକୁ ତେଜିଣ ନାମ କରିବ ପାନ
ଖୋଳ ମୃଦଙ୍ଗ କୁ ଧରିଣ , ମଜିଥିଲେ ଚୈତନ୍ୟ
ଗର୍ବ ଅହଂକାର ଛାଡିବ ମିଛ ମାୟା ସଂସାର
ଗୁରୁପଦ ସେବା କରିଲେ ଭବୁଁ ହୋଇବ ପାର ।

## -:ମୁକ୍ତି ଚଉତିଶା(କ୍ରମଶଃ):-

ଘୃତସାର ଦୁଗ୍ଧ ମଧ୍ୟରେ, ଭାଗବତ ସଂସାରେ
ଘୃତ ଭାଗବତ ପିଇଲେ, ହରଭାବ ପ୍ରେମରେ
ଚାରିଯୁଗେ ଶମ୍ଭୁ ଅଟନ୍ତି ଶ୍ରେଷ୍ଠ ଯୋଗୀରେ ଗଣ୍ୟ
ଚିରଞ୍ଜିବୀ ଯୋଗାସନରେ ବ୍ରହ୍ମ କରନ୍ତି ଧ୍ୟାନ ।
ଛାର ମଣିଷ ତୁ ଦେଖାଉଅଛୁ କେତେ ଭେଳିକି
ଛତ୍ରପତି ପରି ଭାବୁଛୁ ମନେ ଗର୍ବ ବହିକି
ଜାହ୍ନବୀରେ ସ୍ନାନ କରିଲେ , ପାପ ଯେପରି ଧୌତ
ଜଗନ୍ନାଥ ଦାରୁ ଦର୍ଶନେ ଶାନ୍ତ ହୁଅଇ ଚିତ୍ତ
ଝସ କେତନଙ୍କ ବାଣରେ ମନ ହୁଏ ଯେପରି
ଝାସ ଦେଇ ମନ ମୁକତି ଲଭ, ଭଜ ଶ୍ରୀ ହରି ।
ଟଙ୍କଧର ଏକା ସଂସାରେ ଭାଗବତ ରସକୁ
ଟୀକାକାର ହୋଇ ଶ୍ରଦ୍ଧାରେ ଜ୍ଞାନ ଦେଲେ ଶିବାଙ୍କୁ
ଠକାମି ଭଣ୍ଡାମି ଅନିତୀ ଛାଡ ଦୁର୍ନିତୀ ସବୁ
ଠାକୁରଙ୍କୁ ଡାକ ଶ୍ରଦ୍ଧାରେ ମୃତ୍ୟୁଞ୍ଜୟୀ ହୋଇବୁ
ଡାକିନୀ ଯୋଗିନୀ ଭ୍ରମିବେ ଏହି ମହି ମଣ୍ଡଳେ
ଡଙ୍କୁଣୀଏ କେଳି କରିବେ ଜାଣ ପ୍ରଳୟ କାଳେ ।
ଢଙ୍ଗ ଢାଙ୍ଗ ସବୁ ଯିବରେ ଦିନେ ମାଟିରେ ମିଶି
ଢମ କୁହା ଢଗ ଗାଉଛୁ ଦେଇ ମୁରୁକା ହସି ।
ତପ୍ତ ବୈତରଣୀ ପାଇଁକି ପ୍ରଭୁ ନଦିଆ ଶଶୀ
ତିମିର ନାଶିଲେ ସଂସାରୁ ରାମକୃଷ୍ଣଙ୍କୁ ଘୋଷି
ଥୟ କଲେ ମନ ଅସ୍ଥିର ଗଉରାଙ୍ଗ ନିମାଇଁ
ଥରି ଗଦ୍‌ଗଦେ କାନ୍ଦିଲେ ଦେଖି ନିଳାଦ୍ରୀ ସାଇଁ
ଦୃଶ୍ୟ ଆଜ କେଡେ ସୁନ୍ଦର , ଚର୍ମ ନେତ୍ରରେ ମୋରି
ଦାରୁବ୍ରହ୍ମ କିଏ କହୁଛି , ବୃନ୍ଦାବନ ବିହାରୀ ।
ଧର୍ମପଥେ ଯିଏ ପଥିକ , ତାକୁ ସହାୟ ଧର୍ମ
ଧନ ବିଦ୍ୟାବଳ ନୁହଁଇ କେବେ ତାହାରୀ ସମ ।

# -:ମୁକ୍ତି ଚଉତିଶା(କ୍ରମଶଃ):-

ନାରଦ ମହର୍ଷି କରିଲେ କିଛି ସେ ରସପାନ
ନାରାୟଣ ପଦମୁଖରେ ନିତ୍ୟ ଅବ ଗାହନ ।
ପୃଥ୍ୱୀ ଅପ୍‌ତେଜ ମରୁତ ବ୍ୟୋମ ପଞ୍ଚ ଭୂତରେ
ପାର୍ଥୀବ ଶରୀର ମିଶିବ ଦିନେ ଯେଉଁ ସ୍ଥାନରେ ।
ଫଳ ନିଷ୍ଟେ ପ୍ରାଣୀ କରିବ ଭୋଗ କର୍ମାନୁଯାୟୀ
ଫାଳ କରି କାଳ ଦଣ୍ଡିବ ନିଛ ଜନ୍ମ ଦେବଇଁ ।
ବିଷ୍ଣୁ ଅଂଶୀ ଯେତେ ଭକତ ଥିବେ ତ୍ରାହି ପାଇବେ
ବିଶ୍ୱ ବିଧାତାଙ୍କ ପଦ ପଙ୍କଜେ ଲୀନ ହୋଇବେ ।
ଭକତ ବତ୍ସଳ ଭାବରେ ବନ୍ଧା ତ୍ରୈଲୋକ୍ୟ ନାଥ
ଭାବ ସାଗରରେ ଭଜରେ ମନ ବୈକୁଣ୍ଠ ପ୍ରାପ୍ତ
ମକରନ୍ଦ ପାନ ନାମ ପ୍ରେମରେ ଯେ ମଜ୍ଜୁଥାଇ
ମହାପୁରୁଷରେ ହୋଇବୁ ଗଣ୍ୟ ନକ୍ଷତ୍ର ହୋଇ
ଯୁଗଳ ମୂରତୀ ଶ୍ରୀ ରାଧା କୃଷ୍ଣ କେତେ ସୁନ୍ଦର
ଯତିମୁନି ଗଣ ଭଜନ୍ତି ନିତି , ନାଦ ଓଁକାର
ରାମକୃଷ୍ଣ ପଦ ଅମୃତମୟ କେତେ ମହତ୍ୱ
ରାସକରି କେତେ ଭକତ ଶେଷେ ହୋଇଲେ ମୁକ୍ତ
ଲୟ କରୁଥିଲେ ବ୍ରହ୍ମରେ କେଚ୍ଛେ ସତ୍ୟ ଯୁଗରେ
ଲୋଡା ଖାଲି ଭାବ ଭକତି , ଏହି କଳିକାଳରେ ।
ଶମଦମ ଦାନ କରିଲେ ଜ୍ଞାନଚକ୍ଷୁ ଫିଟିବ
ଶିଷ୍ଟାଚାର ଶୀଳ ସଭାବ ସତଃ ଫୁଟି ଉଠିବ ।
ଷଡ ଦର୍ଶନରେ କରିଲେ ପାରଦର୍ଶୀତା ଲାଭ
ଷଡ ରିପୁ ଦୂର ନ କଲେ କିସ ହୋଇବ ଲାଭ
ସର୍ଗୁ ଦେବଗଣ ଇଛନ୍ତି , ତପଃ ନୁହଁଇ କଷ୍ଟ
ସେଥିପାଇଁ କଳି ଅଟଇ ଯୁଗ ମଧ୍ୟରେ ଶ୍ରେଷ୍ଠ ।
ହୃଦ କନ୍ଦରରୁ ପ୍ରବାହ ହେଉ ଅମୃତ ଝର
ହରଷ ମନରେ ତରିବ ଏହି ଭବ ସାଗର ।
କ୍ଷଣସ୍ଥାୟୀ ପରା ଜୀବନ, କ୍ଷଣ ପ୍ରଭା କି ନଭେ
କ୍ଷମା ମାର୍ଗେ ମନ ନିବେଶି ଜୀବ ମୁକତି ଲଭେ ॥

ଓଁ

# ବିଂଶ ଆଧାତ୍ମିକ ଉପଦେଶ

୧) ବ୍ରାହ୍ମ ମୂହୂର୍ତ୍ତ ଜାଗରଣ(୪.୦୦ ସକାଳ)
୨) ଆସନ(ପଦ୍ମାସନ/ସିଦ୍ଧାସନ/ସୁଖାସନ)
୩) ଜପ(ରୁଚି ଅନୁସାରେ ଯେ କୌଣସି ମନ୍ତ୍ର)
୪) ଆହାର ସଂଯମ(ସାତ୍ତ୍ୱିକ ଖାଦ୍ୟ)
୫) ସ୍ୱତନ୍ତ୍ର ଧ୍ୟାନ କକ୍ଷ(ସାମର୍ଥ୍ୟ ଅନୁସାରେ)
୬) ଦାନ(ରୋଜଗାରର ଦଶ ପ୍ରତିଶତ)
୭) ସ୍ୱାଧ୍ୟାୟ(ଗୀତା/ଭାଗବତ ଆଦି)
୮) ବ୍ରହ୍ମଚର୍ଯ୍ୟ
୯) ସ୍ତୋତ୍ର ପାଠ
୧୦) ସତ୍ସଙ୍ଗ
୧୧) ବ୍ରତ(ଏକାଦଶୀ)
୧୨) ଜପମାଳା
୧୩) ମୌନବ୍ରତ
୧୪) ବାଣୀ ସଂଯମ(ସତ୍ୟ କହିବ)
୧୫) ଅପରିଗ୍ରହ(ଆବଶ୍ୟକତା କମାଅ)
୧୬) ହିଂସା ପରିହାର(କ୍ରୋଧ ନିୟନ୍ତ୍ରଣ)
୧୭) ଆତ୍ମନିର୍ଭରତା(ନିଜ କାମ ନିଜେ କର)
୧୮) ଆଧାତ୍ମିକ ଡ଼ାୟରୀ
୧୯) କର୍ତ୍ତବ୍ୟ ପାଳନ
୨୦) ଈଶ୍ୱର ଚିନ୍ତନ



